ମହେଶ ଦତ୍ତାନିଙ୍କ

# ମଣିଷ ପରି ନାଚ

ଅନୁବାଦ : ମନୁ ଦାଶ





ମହେଶ ଦତ୍ତାନି

ଫାଇନାଲ୍ ସଲ୍ୟୁସନ୍ସ, ଡ୍ୟାନ୍ସ ଲାଇକ୍ ଏ ମ୍ୟାନ୍, ବ୍ରେଭଲି ଫଟ୍ ଦି କୁଇନ୍, ତାରା, ଥାର୍ଟି ଡେଜ ଇନ୍ ସେପ୍ଟେମ୍ବର ଓ ଦି ବିଗ୍ ଫ୍ୟାଟ ସିଟି ଆଦି ଇଂରାଜୀ ଭାଷାରେ ସମ୍ଭ୍ରାନ୍ତ ନାଟକ ରଚନା କରିଥିବା ନାଟ୍ୟକାର ମହେଶ ଦତ୍ତାନିଙ୍କ ଜନ୍ମ ୧୯୫୮ ମସିହାରେ। ଯାହାଙ୍କ ଇଂରାଜୀ ଭାଷାରେ ଲିଖିତ ପ୍ରଥମ ନାଟକ ସାହିତ୍ୟ ଅକାଦେମୀ ଦ୍ୱାରା ପୁରସ୍କୃତ ହୋଇଥିଲା। ତାଙ୍କ ନାଟକ ବିଶିଷ୍ଟ ନାଟ୍ୟ ନିର୍ଦ୍ଦେଶକ ଅରବିନ୍ଦ ଗୌର, ଆଲିକ୍ ପଦମ୍ସୀ ଏବଂ ଲିଲେଟ୍ ଦୁବେଙ୍କ ନିର୍ଦ୍ଦେଶନାରେ ଭାରତ ତଥା ପୃଥିବୀର ବିଭିନ୍ନ ଦେଶରେ ମଞ୍ଚସ୍ଥ, ଆଲୋଚିତ ତଥା ପ୍ରଶଂସିତ ହୋଇଛି।

୧୯୮୬ ମସିହାରେ ଜଣେ କପିରାଇଟର ଭାବେ ନିଜ ଜୀବନ ଆରମ୍ଭ କରିଥିବା ଦତ୍ତାନିଙ୍କ ଇଂରାଜୀରେ ଲିଖିତ ପ୍ରଥମ ନାଟକ ହେଉଛି "ହୋୟାର ଦେୟାର୍ ଇଜ୍ ଏ ଉଇଲ୍" ଏବଂ ୧୯୯୫ ମସିହାରୁ ସେ ବିଧିବଦ୍ଧ ଭାବେ ନାଟକ ଲିଖନ ଓ ମଞ୍ଚସ୍ଥରେ ଲିପ୍ତ ଅଛନ୍ତି। ଜଣେ ଭଲ ଶିକ୍ଷକ, ନାଟ୍ୟ ନିର୍ଦ୍ଦେଶକ ଓ ଚଳଚ୍ଚିତ୍ର ନିର୍ଦ୍ଦେଶକ ଭାବେ ତାଙ୍କର ଖ୍ୟାତି ରହିଛି।

ମ୍ୟାଙ୍ଗୋ ସଫଲ୍, ମର୍ଣ୍ଣ ରାଗ, ଡ୍ୟାନ୍ସ ଲାଇକ୍ ଏ ମ୍ୟାନ୍ ତଥା ଏକ୍ ଅଲଗ୍ ମଉସମ୍ ଆଦି ତାଙ୍କ ନିର୍ଦ୍ଦେଶିତ ଚଳଚ୍ଚିତ୍ର। ୧୯୯୮ ମସିହାରେ ଡ୍ୟାନ୍ସ ଲାଇକ୍ ଏ ମ୍ୟାନ୍ ଚଳଚ୍ଚିତ୍ରକୁ ଇଂରାଜୀ ଭାଷାରେ ଲିଖିତ ସର୍ବଶ୍ରେଷ୍ଠ ଚଳଚ୍ଚିତ୍ର ଭାବେ ଜାତୀୟ ପୁରସ୍କାର ଦିଆଯାଇଥିଲା।

ମହେଶ ଦତ୍ତାନିଙ୍କ

# ମଣିଷ ପରି ନାଚ

ଅନୁବାଦ : ମନୁ ଦାଶ

ପକ୍ଷୀଘର ପ୍ରକାଶନୀ

ମଣିଷ ପରି ନାଚ (ନାଟକ)
ଲେଖକ : ମହେଶ ଦତ୍ତାନି
ଅନୁବାଦ : ମନୁ ଦାଶ

ପ୍ରକାଶକ : ପକ୍ଷୀଘର ପ୍ରକାଶନୀ

ପ୍ରଚ୍ଛଦ ପ୍ରସଙ୍ଗ : 'ଡ୍ୟାନ୍‌ସ ଲାଇକ୍ ଏ ମ୍ୟାନ୍'ର ଏକ ଦୃଶ୍ୟରେ ଲିଲେଟ୍ ଦୁବେ ଓ ବିଜୟ କ୍ରିଷ୍ଣ

ପ୍ରଥମ ସଂସ୍କରଣ : ୨୦୧୪

---

Manisha Pari Nacha
by Mahesh Dattani
Translated by : Manu Dash

Publisher : Pakshighar Prakashanee
Plot No. 271, 2nd Floor, Gouri Nagar,
Bhubaneswar-14, Odisha, India
Mob. +91 94385 59778, 98610 10887
e_mail : pakshighara1@gmail.com

Printed at : Duduly Process & Offset
Bhubaneswar-9

Cover - Aurobindo Rout

First Edition : 2014

Price : ₹100.00

---

## ଚରିତ୍ର

ରତ୍ନା
ଜୟରାଜ
ଲତା
ବିଶ୍ୱାସ
ଅମୃତ ଲାଲ

## ପ୍ରଥମ ଅଙ୍କ

(ସହରର କେନ୍ଦ୍ରସ୍ଥଳୀରେ ଗୋଟେ ପୁରୁଣା କାଳିଆ ଘରର ଏକ ନିଷ୍ପ୍ରଭ କୋଠରୀ। ଠିକ୍ ମଧ୍ୟ ଭାଗରେ ଘରର ପ୍ରବେଶ ଦ୍ୱାର– ଏକ ବିରାଟ ତୋରଣ ସଦୃଶ। ସେଇ ପ୍ରବେଶ ଦ୍ୱାରର ପଶ୍ଚାତ ଭାଗରେ ରହିଛି ଆଧୁନିକତାର ଛାପ ରହିଥିବା ସାଜସଜ୍ଜା, ଗୋଟେ ଟେଲିଫୋନ୍ ଓ ତା ଉପରକୁ ଏକ ଆଧୁନିକ ପେଣ୍ଟିଂ। ସେଠି ଥିବା ଚଳମାନ୍ ପଟାଟି ଘୁଞ୍ଚାଇବା ମାତ୍ରେ ଦୃଷ୍ଟି ପଥାରୁଢ଼ ହୁଏ ଏକ ବଗିଚା। ମଞ୍ଚର ଉପର ପଟେ ବାମକୁ ରହିଛି ଏକ ବିରାଟ ହଲ୍, ଯେଉଁଠି ନୃତ୍ୟାଭ୍ୟାସ୍ କରାଯାଏ। ମଞ୍ଚର ଉପର ପଟ ଡାହାଣକୁ ରହିଛି ଗୋଟେ ଷ୍ଟେଆର୍‌କେସ୍ ଯାହା ଲଂବି ଯାଇଛି ଶୋଇବା ଘରମାନଙ୍କ ଆଡ଼େ। ମଞ୍ଚର ଡାହାଣ ପଟ ତଳ ଭାଗରେ ରହିଛି ରୋଷେଇ ଘର। ଘରର ସମସ୍ତ ଫର୍ଣ୍ଣିଚର ପ୍ରାୟ ଚାଳିଶ ବର୍ଷର ପୁରୁଣା।)

ଦୁଆର ବନ୍ଦ ଦେଇ ପ୍ରବେଶ କରନ୍ତି ଲତା ଓ ବିଶ୍ୱାସ।

ବିଶ୍ୱାସ : ତା'ହେଲେ ଏଇ ଜାଗା ଯେଉଁଠି ମୋତେ ହତ୍ୟା କରାଯାଇଥିଲା।

ଲତା : ଏତେବେଳକୁ ସେମାନେ ଏଠି ପହଂଚି ଯିବା କଥା।

ବିଶ୍ୱାସ : ସେମାନେ ଏ ଯାକେ ଆସି ନାହାନ୍ତି ? ତୁମେ କହିଲ ସବୁ ବ୍ୟବସ୍ଥା ହେଇ ଯାଇଛି। ଟିକିଏ ରୁହ। ସେମାନେ କହିଥିଲେ ସାତଟା ବେଳେ।

ଲତା : ମୁଁ ଜାଣେ। ହେଲେ ସେମାନଙ୍କୁ ବାହାରକୁ ଯିବାକୁ ପଡ଼ିଲା। ଗୋଟେ ଜରୁରୀ କାମରେ। ଇମରଜେନ୍‌ସି।

ବିଶ୍ୱାସ : କେବଳ ଡାକ୍ତର ଆଉ ନିଆଁ ଲିଭାଳିମାନେ 'ଇମରଜେନ୍‌ସି'ରେ ବାହାରକୁ ଯା'ନ୍ତି। ନାଚ ଆରମ୍ଭ ହେବା ଯାଏ ନାଚ କରୁଥିବା ଲୋକେ ଘରେ ରହିଥାନ୍ତି। ଆଉ ନିକଟ ଭବିଷ୍ୟତରେ ଜ୍ୱାଇଁ କରୁଥିବା ଲୋକଟିକୁ ନିଜ ଘରକୁ ଡାକିବା ବେଳେ ତ ନିଶ୍ଚୟ ଘରେ ରୁହନ୍ତି।

ଲତା : ଏତେ ଜଲ୍‌ଦି ବିରକ୍ତ ହୁଅନା। ସେମାନେ ପ୍ରଥମେ ତୁମକୁ ଭେଟିବେ।

ବିଶ୍ୱାସ : (ବସି ପଡ଼ିଲା : ମୁଁ ଏକରକମ୍ ନିଶ୍ଚିତ ଯେ ସେମାନେ ତୁମଠୁ ଛୁଟ୍‌କାରା ପାଇବାକୁ ଏକଦମ୍ ବ୍ୟାକୁଳ। ବାହାଘରର ଯାବତୀୟ କଥା ଉପରେ ବୋଧେ ଆମର ଆଲୋଚନା ହବ। ମାନେ, ତୁମକୁ କ'ଣ ସବୁ ଦେବେ, କିଏ କେତେ ଲୋକଙ୍କୁ ଖାଇବାକୁ ଦବ। ତା'ପରେ ତୁମ ମାଆ ମୋ ମାଆଙ୍କୁ ଭେଟିବାକୁ ଚାହିଁବେ ଆଉ ସେମାନେ ପରସ୍ପରକୁ ସେମାନଙ୍କ କାଞ୍ଚିପୁରମ୍ ଶାଢ଼ୀ ବି ଦେଖେଇବେ।

ଲତା : ଓଃ, ବିଶ୍ୱାସ! ହେଇପାରେ ସେମାନେ ଆସିବା ଆଗରୁ ତୁମକୁ ମୁଁ ଧକ୍କା ଦେଇ ବାହାର କରିଦେବି।

ବିଶ୍ୱାସ : ହେଲେ କାହାନ୍ତି ସେମାନେ ?

ଲତା : ଆମର ଜଣେ ସଂଗୀତଜ୍ଞଙ୍କ ଦେହ ଭଲ ନାହିଁ। ପାହାଚରୁ ଝୁଣ୍ଟି ତଳେ ପଡ଼ିଗଲେ ସେ, ଆଉ ଗୋଡ଼ଟା ଭାଂଗିଗଲା।

ବିଶ୍ୱାସ : ନିଜ ଧୋତିରେ ଝୁଣ୍ଟି ପଡ଼ିଲେ ନା ଆଉ କିଛି ?

ଲତା : ହେଲେ ସେମାନେ ମୋତେ କଥା ଦେଇଛନ୍ତି, ଠିକ୍ ସାତଟାରେ ଏଠି ପହଂଚିବେ।

ବିଶ୍ୱାସ : ସେମାନେ ଏବେ ବି ହସ୍‌ପିଟାଲ୍‌ରେ ଥାଇ ପାରନ୍ତି। ସେମାନଙ୍କୁ ମୁଁ ଦେଖି ପାରୁଛି ଏଇନେ : କ୍ଷମା କରିବେ, ଆମକୁ ଜଲଦି ଟିକେ ଯିବାକୁ ହବ, ଆମକୁ ଆମ ଜ୍ୱାଇଁ ସହ ଭେଟିବାର ଅଛି।

ଲତା : ମନେ ମନେ ଗୁଡ଼ ଖାଅନି ଯେ ତୁମକୁ ଦେଖିବା ପାଇଁ ସେମାନେ ପରସ୍ପରକୁ ଝୁଣ୍ଟି ପଡ଼ିବେ ବୋଲି।

ବିଶ୍ୱାସ : କାହିଁକି ? ତାଙ୍କ ପ୍ରିୟ ଲତା କାହାକୁ ବାହା ହଉଚ ଏ କଥା ଜାଣିବାକୁ କ'ଣ ସେମାନେ ବ୍ୟାକୁଳ ହେବେନି ?

ଲତା : ସତ କହିବାକୁ ଗଲେ, ତୁମେ କିଏ ଆଉ କ'ଣ ଜାଣିବାକୁ ସେମାନେ ଆଦୌ ବିବ୍ରତ ନୁହଁନ୍ତି ଯେ ପର୍ଯ୍ୟନ୍ତ ତୁମେ ମୋତେ ସୁଯୋଗ ଦଉଥିବ ନାଚିବା ଲାଗି ।

ବିଶ୍ୱାସ : ଆଚ୍ଛା । ଯଦି ମୁଁ ତୁମକୁ ଜୋର୍ ଜବରଦସ୍ତ ଦୁବାଇ ନେଇଯାଏ ଆଉ ସେଠି ଜଣେ ଶେଖ୍‌କୁ ବିକ୍ରି କରିଦିଏ ?

ଲତା : ଠିକ୍ ଅଛି ! ଅନ୍ତତଃ ତା'ର ହାରେମ୍‌ରେ ତ ମୁଁ ନାଚି ପାରିବି ! ନା, ଏକଦମ୍ ସତ କହୁଛି, ସେମାନେ ଆଦୌ ବ୍ୟସ୍ତ ନୁହଁନ୍ତି ।

ବିଶ୍ୱାସ : କୋଉ ଭଳିଆ ବାପା ମା' ସେମାନେ ?

ଲତା : (ସ୍ମିତହସ) ମୁଁ କହିଥିଲି, ସେମାନେ ଟିକେ ଭିନ୍ନ ଧରଣର ବୋଲି ।

ବିଶ୍ୱାସ : ମୋ ବାପାଙ୍କ ବିଷୟରେ କହିଚ ତାଙ୍କୁ ?

ଲତା : ହଁ ।

ବିଶ୍ୱାସ : କମର୍ସିଆଲ ଷ୍ଟ୍ରୀଟ୍‌ରେ ସେ ମିଠାଇ ଦୋକାନ ଚଳାନ୍ତି ବୋଲି ?

ଲତା : ହଁ କହିଚି । ଏ କଥା ବି କହିଚି ଯେ ସେ ରାସ୍ତାର ଅଧେ କୋଠା ସବୁ ତାଙ୍କର ।

ବିଶ୍ୱାସ : ମୁଁ ଭାବୁଚି, ସେମାନେ ଗୋଟେ ବଡ଼ ମାଲ୍ ପାଇଛନ୍ତି ବୋଲି ଭାବୁନାହାନ୍ତି ।

ଲତା : ମୁଁ ଭାବୁଚି, ତୁମେ ଗୋଟେ ବଡ଼ ମାଲ୍ ପାଇଛ ବୋଲି ଭାବୁନାହଁ ।

ବିଶ୍ୱାସ : ସେମିତି ମୁଁ କାହିଁକି ଭାବିବି ?

ଲତା : ଖୁବ୍ ସରଳ କଥା । ଏ ସବୁ ସଂପତ୍ତିର ମୁଁ ହିଁ ଏକମାତ୍ର ଅଧିକାରିଣୀ । ବହୁତ ଦାମ୍ ଏ ସବୁ ସଂପତ୍ତିର ।

ବିଶ୍ୱାସ : (ଚାରି ଆଡ଼କୁ ଚାହିଁ) ଏଇ ସବୁ ? ଖୁବ୍ ପୁରୁଣା କାଳିଆ, ଉଚ୍ଚା ଉଚ୍ଚା ଛାତ... ସବୁ କିଛି । ଏ କାଠ ଗୁଡ଼ାକରେ ଘୁଣପୋକ ଲାଗିଲେଣି । ଅବଶ୍ୟ ଏତେ ଗୁଡ଼ାଏ ଅଛି ।

ଲତା : ସହରର ଏକଦମ୍ କେନ୍ଦ୍ରରେ। ଜାଣିଛ, ଏ ଜମିଟାର ଦାମ୍ କେତେ? ଗୋଟେ ମାରଓ୍ୱାଡ଼ି ବିଲ୍ଡ଼ର୍ ବାପାଙ୍କୁ ନବେ ଲକ୍ଷ ଟଙ୍କା ଯାଚିଲା! (ବିଶ୍ୱାସ ସୁସୁରି ମାରିଲା) ଗୋଟେ ସପିଂ କମ୍ପ୍ଲେକ୍ସ ବନେଇବାକୁ ଚାହୁଁଛି ସେ।

ବିଶ୍ୱାସ : ତା'ହେଲେ ଏଇଟାକୁ ବିକୁଛନ୍ତି ସେ?

ଲତା : ନା, (ବିଶ୍ୱାସକୁ ନିରିଖେଇ ଚାହିଁଲା) ଏଇଟା ସେ କେବେ ବି କରିବେନି। ସାରା ଜୀବନ ଏଠି କଟେଇଛନ୍ତି ମୋ ବାପା ମା'। ଏଇଠୁ ପାଞ୍ଚଟା କୋଠା ଛାଡ଼ିଦେଲେ ପଡ଼ିବ ମା'ଆଙ୍କ ଘର। ମୁଁ ଶୁଣିଛି, ଏବେ ସେଠି କେହି ନାହାନ୍ତି। ବାହା ହବା ଆଗରୁ ବି କୁଆଡ଼େ ମାଆ ଏଇଠି ରହୁଥିଲା। ସେ ଦୁହେଁ ଯାକ ଜଣେ ଗୁରୁ ପାଖରେ ହିଁ ନାଚ ଶିଖୁଥିଲେ। ଛାଡ଼, ଆମେ କୋଉଠି ନାଚ ଶିଖୁ, ଆସ ତୁମକୁ ଦେଖେଇବି।

ବିଶ୍ୱାସ : ଘରଟା ବଡ଼ ବୋଲି ତୁମେ ମୋତେ କହିଥିଲ, ହେଲେ ଏତେ ବଡ଼ ବୋଲି ମୁଁ କେବେ ଆଶା କରି ନ ଥିଲି।

(ଲତା ବିଶ୍ୱାସକୁ ନାଚ ଘର ଆଡ଼କୁ ବାଟ କଢ଼େଇ ନେଇଯାଏ ଏବଂ ସୁଇଚ ମାରି ବଲବ୍ ସବୁକୁ ଜଳାଏ।)

ବାଃ! ଏମିତିକା ଘର ତ ଆଗରୁ ମୁଁ କେବେ ଦେଖି ନଥିଲି।

ଲତା : ଏଇ ସବୁ ବାଦ୍ୟଯନ୍ତ୍ରରୁ କେତେ ଗୁଡ଼ା ବାପା ମା' ବ୍ୟବହାର କରୁଥିଲେ। ପ୍ରାୟ ଚାଳିଶ ବର୍ଷର ପୁରୁଣା।

(ହଳେ ଘୁଙ୍ଗୁର ହାତରେ ଉଠାଏ) ତମେ ବିଶ୍ୱାସ କରି ପାରୁଛ? ବାପା ଏଇ ଘୁଙ୍ଗୁରକୁ ତାଙ୍କ ପ୍ରଥମ ନୃତ୍ୟ ପ୍ରଦର୍ଶନ ଦିନ ହିଁ ପିନ୍ଧିଥିଲେ।

ଓ...ହୋ...ଓ! ଯେତେବେଳେ ବି ମୁଁ ଯାକୁ ଛୁଏଁ ମୋ ଦେହ ଶିହିରି ଉଠେ। ଏ କୋଠରୀର ଗୋଟେ ଶେଷତ୍ୱ ଅଛି। ତୁମେ ଅନୁଭବ କରି ପାରୁଛ?

ବିଶ୍ୱାସ : କ'ଣ? ଶିହରଣ?

ଲତା : ବାତାବରଣ! ସ୍ପନ୍ଦନ! (ଘୁଙ୍ଗୁର ହଲାଇବା)

ବିଶ୍ୱାସ : ହଁ, ଅବଶ୍ୟ।

ଲତା : ଏ ଚଟାଣ ଲକ୍ଷ ଲକ୍ଷ ଭଂଗୀ ଆଉ ମୁଦ୍ରାକୁ ଅନୁଭବ କରିଛି। ବାରମ୍ବାର (ପଦପାତ କରିବା) ଅନୁଭବି ପାରୁଛ ?

ବିଶ୍ୱାସ : (ମୁଣ୍ଡ ହଲାଇ) – ମୁଁ ବି ଶୁଣି ପାରୁଛି।

ଲତା : ଯେବେ ମୁଁ ଛୋଟପିଲାଟିଏ ଥିଲି, ଏଇ ଦୁଆର ପାଖରେ ଠିଆ ହେଇ ବାପା ଆଉ ମା' ନୃତ୍ୟାଭ୍ୟାସ କରୁଥିବା ଦେଖିଛି। ମୋ ପାଇଁ ତ ସେ ସବୁ କୁହୁକ ପରି ଲାଗୁଥିଲା। ସେଇ ସମୟରୁ ମୁଁ ଜାଣିଲି ମୁଁ କ'ଣ ହେବାକୁ ଚାହୁଁଛି। ବିଶ୍ୱାସ, ଆମେ ଯେବେ ବାହା ହେଇଯିବା- ତୁମେ ମୋତେ ଏଠି ଆସି ନ୍ୟତ୍ୟାଭ୍ୟାସ କରିବାକୁ ଅନୁମତି ଦବ । ଦବନି ?

ବିଶ୍ୱାସ : ଅବଶ୍ୟ ଲତା...

ଲତା : ଓ, ବହୁତ ବହୁତ ଧନ୍ୟବାଦ ! (ନିଜ ଆଖି ସାମ୍ନାରେ ଘୁଙ୍ଗୁରକୁ କିଛି ସମୟ ଧରି ରଖେ ଏବଂ ପରେ ଚଟାଣ ଉପରେ ଥୋଇଦିଏ।)

ବିଶ୍ୱାସ : ମୋତେ ଧନ୍ୟବାଦ ଦିଅନା। ମୁଁ ଭାବୁନି, ଆମ ଘରର ଚଟାଣ ଲକ୍ଷ ଲକ୍ଷ ମୁଦ୍ରା ଆଉ ଭଙ୍ଗୀକୁ ସହ୍ୟ କରି ପାରିବ।

ଲତା : ଏବଂ ଆମର ପିଲାପିଲି ନ ଥିବେ।

ବିଶ୍ୱାସ : ଏବଂ ଆମର ନ ଥିବେ... କ'ଣ ?

ଲତା : ମୋ କହିବା କଥା, ଏକଦମ୍ ସାଙ୍ଗେ ସାଙ୍ଗେ ନୁହେଁ। ଆମେ ପରେ କରିପାରିବା। ନା କ'ଣ କହୁଚ ?

ବିଶ୍ୱାସ : ଜାତି ବାହାରେ ମୁଁ ବାହା ହଉଚି ବୋଲି ଯେମିତି ମୁଁ ବାପାଙ୍କୁ କହିଲି, ଲାଗିଲା ଏଇନେ ହିଁ ସେ ମରିଯିବେ। ଏ କଥା ଶୁଣିବା ଯାଏ ଟିକିଏ ଅପେକ୍ଷା କର।

ଲତା : ବହୁତ ସମୟ ପଡ଼ିଛି। ଆମରତ ଏବେ ଯୁବାବସ୍ଥା। (ମୁଖ୍ୟ କୋଠରୀକୁ ସେ ଆସେ, ବିଶ୍ୱାସ ତାର ଅନୁଧାବନ କରେ)। ମୋ ବାପା ଆଉ ମା'ଙ୍କୁ ଯେତେବେଳେ ୪୦ ବର୍ଷ, ସେତିକି ବେଳେ ମୋର ଜନ୍ମ।

ବିଶ୍ୱାସ : ହେଇପାରେ ଆମେ କାହାକୁ ପୋଷ୍ୟ କରିବା।

ଲତା : ବାଜେ କଥା କୁହନି।

ବିଶ୍ୱାସ : ତାକୁ ରଖ ଆମେ ଅନ୍ତତଃ ଅଭ୍ୟାସ କରିବା। ତା'ହେଲେ ଆମେ ଜାଣି ପାରିବା କ'ଣ କରିବାକୁ ହବ, ଯେତେବେଳେ ଆମର ପିଲା ହବ, ମାନେ ଯିମିତି ଡ୍ରେସ୍ ରିହିଅର୍ସାଲ୍।

ଲତା : ତୁମର ପିଲାପିଲି ଦରକାର ?

ବିଶ୍ୱାସ : ହଁ

ଲତା : ବହୁତ ଗୁଡ଼ାଏ ?

ବିଶ୍ୱାସ : ହଁ।

ଲତା : ତେବେ ଯାଅ। ଆଉ କାହାକୁ ବାହା ହେଇ ପଡ଼ !

ବିଶ୍ୱାସ : ଓ.... ଲତା...ଲତା....ଅନ୍ତତଃ ଦୁଇଟି ତ ଦରକାର।

ଲତା : (ହସି) ଠିକ୍ ଅଛି।

ବିଶ୍ୱାସ : ଏକଦମ୍ ପକ୍କା ?

ଲତା : ପ୍ରଥମଟା ତ ସାଙ୍ଗେ ସାଙ୍ଗେ ଆଉ ଆରଟା... ଦେଖିବା।

ବିଶ୍ୱାସ : ଚିୟର୍ ଅପ୍। ଆମର ଛୁଆଁଳା ବି ହେଇପାରେ। ପ୍ରେମର ପରିଶ୍ରମ ଅନ୍ତତଃ ବଞ୍ଚିଗଲା।

ଲତା : ତୁମେ ଗୋଟେ ଜୋକର। ଜାଣେନା, ବାପା ଆଉ ମା' କ'ଣ ଭାବିବେ ତୁମକୁ ଦେଖିବା ପରେ।

ବିଶ୍ୱାସ : (ନିଜ ହାତ ଘଣ୍ଟା ଦେଖିଲା) ସେମାନେ ପ୍ରଥମେ ମୋତେ ଭେଟିବାକୁ ହବ।

ଲତା : ବସ (ସେମାନେ କିଛି ସମୟ ଏକାଠି ବସନ୍ତି) ତୁମ ପାଇଁ କିଛି କଫି ତିଆରି କରିପାରେ କି ?

ବିଶ୍ୱାସ : କରିପାରେ କାହିଁକି ?

ଲତା : ମୁଁ ଜାଣିନି। ଏଇଟା ତ କରିବା ଜିନିଷ ନା। ନା କ'ଣ କହୁଚ ?

ବିଶ୍ୱାସ : ଠିକ୍ ଅଛି । ତୁମେ ଯଦି ଭାବୁଚ କର, ମୁଁ କାହିଁକି ତୁମକୁ ମନା କରିବି ?

ଲତା : (ଠିଆ ହେବା ଏବଂ ଅଟକି ଯିବା) ମୋ'ର କହିବା କଥା ହେଲା, ଯଦି ତୁମେ ଚାହଁନା ତେବେ ମୁଁ କରିବିନି ।

ବିଶ୍ୱାସ : ହେଲେ ଯଦି ଏଇଟା କରିବା କଥା, ତା'ହେଲେ ନିଶ୍ଚୟ କରିବା ଉଚିତ ।

ଲତା : କାହିଁକି ? ତୁମ ଆଉ ମୋ ଛଡ଼ା ଏଠି ଆଉ ତ କେହି ନାହାନ୍ତି । ଚା କଲି ନା କଲି ନାହିଁ- କିଏ ପଚାରେ ? ଅବଶ୍ୟ ପିଇବା ଲାଗି ତମର ଯଦି ବ୍ୟାକୁଳତା ନାହିଁ । (ଟିକିଏ ରହି) ଅଛି କି ତୁମର ?

ବିଶ୍ୱାସ : ନା ସେମିତି ନୁହଁ

ଲତା : ବାସ୍, ଏଇଠି ଯା'ର ପରିସମାପ୍ତି ହେଇଗଲା ।

(ବସି ପଡ଼େ)

ବିଶ୍ୱାସ : ଅପରପକ୍ଷରେ, କପ୍‌ମାନଙ୍କୁ ବୁଢ଼ା ଆଙ୍ଗୁଠିରେ ଘୁରେଇ ଖଡ଼ ଖଡ଼ କରିବାକୁ ମୋତେ ଭଲ ଲାଗେ ।

ଲତା : କିଛିଟା ହିଁ ତେବେ କରୁଛି । (ଠିଆ ହେବା)

ବିଶ୍ୱାସ : ଯଦି ତମେ ବୋର୍ ନ ହୁଅ । ପ୍ରକୃତରେ, ନ ହେଲେ ବି ଚଳିବ ।

ଲତା : ତୁମର କଫି ଦରକାର ନା ନାହିଁ ?

ବିଶ୍ୱାସ : ଫିଲ୍‌ଟର୍ କଫି ?

ଲତା : ନା, ଚଟାପଟବାଲା ।

ବିଶ୍ୱାସ : ତୁମ ଘରେ ଚା' ମିଳିବ ?

ଲତା : ଆମେ ଘରେ ଚା' କରୁନା ।

ବିଶ୍ୱାସ : ଠିକ୍ ଅଛି । ବରଂ ତମେ ଏଣିକି ଚା' ବନେଇବା ଶିଖ । ଗୋଟେ ଦକ୍ଷିଣୀକୁ ବାହା ହେବା ମୋ ବାପା ବରଦାସ୍ତ କରି ପାରନ୍ତି । ହେଲେ ଚା' ତିଆରି କରୁ ନ ଥିବା ଗୋଟେ ବୋହୂକୁ ସ୍ୱୀକାର କରିବା ଅର୍ଥ ତାଙ୍କଠୁ ଖୁବ୍ ବେଶି ଆଶା କରିବା ସାଙ୍ଗେ ସମାନ ହବ ।

ଲତା : ମୁଁ ଦକ୍ଷିଣୀ ନୁହେଁ। ମୋ ବାପା ଗୁଜରାଟି।

ବିଶ୍ୱାସ : ତମ ଘରେ ଚା' ପତି ଅଛି କି ?

ଲତା : ନା।

ବିଶ୍ୱାସ : ତା'ହେଲେ ତମେ ହଉଚ ଦକ୍ଷିଣୀ।

ଲତା : ଠିକ୍ ଅଛି। ପାଖରେ ଗୋଟେ ଦୋକାନ ଅଛି, ମୁଁ ସେଇଠୁ ତମ ପାଇଁ ଚା' ମଗେଇ ଦଉଛି ଆଉ...

ବିଶ୍ୱାସ : ଏବେ ନୁହଁ। ଯେତେବେଳେ ପିଇବାକୁ ଇଛା ହବ, ମୁଁ କହିବି ତୁମକୁ। ଧନ୍ୟବାଦ୍।

ଲତା : (ଦୀର୍ଘଶ୍ୱାସ) ଏଯାଏ ଆମର ବାହାଘର ହେଇନି ଅଥଚ ମୁଁ ଦେଖୁଛି, ଏତେ ଚିଡ଼୍‌ଚିଡ଼ା ଲୋକ ତୁମେ।

ବିଶ୍ୱାସ : ହେ ଭଗବାନ୍!

ଲତା : ପୁଣି କ'ଣ ଏବେ ?

ବିଶ୍ୱାସ : ତୁମ ବାପା ତା'ହେଲେ ଗୁଜୁ ?

ଲତା : କ'ଣ ହେଲା ?

ବିଶ୍ୱାସ : ଆଉ ସେ ଚା' ପିଅନ୍ତିନି ?

ଲତା : ମା'ଙ୍କ ପ୍ରଭାବ, ମୁଁ ଭାବୁଚି।

ବିଶ୍ୱାସ : ଗୋଟେ ଗୁଜୁ ପ୍ରତି ଏତେ ନିଷ୍ଠୁର! ତାକୁ ଚା' ବି ଦବନି ? ତୁମ ମା' ତୁମ ବାପାଙ୍କୁ ଏକଦମ୍ ଦବେଇକି ରଖୁଛନ୍ତି। ବିଚରା!

ଲତା : ମୋ ଧାରଣାରେ ବାପା ଟିକିଏ ନରମା ଲୋକ, ଯେତିକି ଦରକାର ତାଠୁ ଟିକେ ଅଧିକ। ଠିକ୍ ତମ ଭଳିଆ।

ବିଶ୍ୱାସ : ମୁଁ ନରମା ବୋଲି ତମେ ଭାବୁଚ ?

ଲତା : ହଁ।

ବିଶ୍ୱାସ : (ଦୀର୍ଘଶ୍ୱାସ) ମୋ'ର ବି ସେଇ ଧରଣା- ମୁଁ ଟିକେ ନରମା।

ଲତା : ବ୍ୟସ୍ତ ହୁଅନା । ତା'ର ସଦୁପଯୋଗ ମୁଁ କରିବିନି ।

ବିଶ୍ୱାସ : କିନ୍ତୁ ତମ ମା' କରନ୍ତି ।

ଲତା : କ'ଣ କରନ୍ତି ?

ବିଶ୍ୱାସ : ଏକଦମ୍ ଦବେଇକି ରଖନ୍ତି । ତୁମ ବାପାଙ୍କୁ ଡରେଇକି ରଖନ୍ତି ।

ଲତା : ନା, କେବେ ବି କରେନା ସିଏ ।

ବିଶ୍ୱାସ : ସେଇଟା ଗୋଟେ ଆଶ୍ୱାସନା, ତୁମେ ଜାଣ ପରିବାରରେ ଏମିତି ଚାଲେ ।

ଲତା : କିନ୍ତୁ ଏଇଟା ସତ ନୁହେଁ । ମୋ ଜେଜେବାପା ଦବେଇକି ରଖିବା ଭଳିଆ ଲୋକ, କିନ୍ତୁ ମୋ ବାପାଙ୍କୁ ଦେଖ । ସେ...

ବିଶ୍ୱାସ : ତୁମ ଜେଜେବାପା ? ମୁଁ ଭାବିଲି ସେ ମରି ଯାଇଛନ୍ତି ବୋଲି ।

ଲତା : (ଧୈର୍ଯ୍ୟ ଧରି) ଏବେ ସେ ମୃତ । ଆଗରୁ ତ ନଥିଲେ ।

ବିଶ୍ୱାସ : ତାଙ୍କ ବିଷୟରେ ବେଶି କିଛି କହିନ ତମେ ।

ଲତା : ମୁଁ ଯେତେବେଳେ ଛୋଟ ପିଲାଥିଲି ସେତେବେଳେ ସେ ମଲେ । କିନ୍ତୁ ତାଙ୍କ ବିଷୟରେ ମୁଁ ସବୁକଥା ଜାଣେ । ସେ ଥିଲେ ଜଣେ ସମାଜ ସଂସ୍କାରକ । ବ୍ରିଟିଶ୍ ଶାସନ ବେଳେ ଏଇ କୋଠରୀରେ ସେ ଗୁପ୍ତ ବୈଠକମାନ କରୁଥିଲେ ।

ବିଶ୍ୱାସ : ଓ, ସ୍ୱାଧୀନତା ସଂଗ୍ରାମୀ !

ଲତା : ସେତେବେଳେ ଏଇଟା ଗୋଟେ ବଡ଼ କାମ ଥିଲା ବୋଲି ମୁଁ ଭାବୁଚି ।

ବିଶ୍ୱାସ : ଆଉ ଯେବେ ସ୍ୱାଧୀନ ହେଇଗଲୁ ?

ଲତା : ନାଚ କରିବା କଥା ଛାଡ଼, ଡାଡିଙ୍କୁ ଠିକ୍ ବାଟରେ ଚଳେଇବା ପାଇଁ ବି ସେ ସମୟ ପାଉ ନ ଥିଲେ ।

ବିଶ୍ୱାସ : ସେମାନଙ୍କ ଭିତରେ ଗୋଟେ ଝକାସ୍ ମାର୍କା ଲଢ଼େଇ ହେଇଥିବ ।

ଲତା : ନିଶ୍ଚୟ ହେଇଥିବ ତାଙ୍କ ଭିତରେ । ହେଲେ ଡାଡିଙ୍କର ତାଙ୍କ ପ୍ରତି ଗଭୀର ସମ୍ମାନ ଥିଲା । ସେଇଥିପାଇଁ ତ ସେ ଏ ଘର କେବେ ବି ବିକିବେନି ।

ତମେ ଜାଣିଛ, ଏ ଘରର ଯେତେସବୁ ଫର୍ଣ୍ଣିଚର ହେଉଛି ମୋ ଜେଜେବାପାଙ୍କ ଅମଳର? ବାପା ତ ଏଥିରୁ ଗୋଟେ ବି ହାତଛଡ଼ା କରିବାକୁ ନାରାଜ।

ବିଶ୍ୱାସ : ଏଇଆ ତାହେଲେ!

ଲତା : ହୁଃ?

ବିଶ୍ୱାସ : ତାହେଲେ ଏଇଆ ହଉଚି କଥା।

ଲତା : କ'ଣ?

ବିଶ୍ୱାସ : ଏ କୋଠରୀ ମତେ କ'ଣ ଗୋଟାଏ ମନେ ପକେଇ ଦଉଛି। ଏବେ ମନେ ପଡ଼ିଲା କ'ଣ ସେଇଟା। ପୁରୁଣା ଜିନିଷ ମିଳୁଥିବା ଦୋକାନ।

ଲତା : ହଁ, ଏଠି ଥିବା ସବୁ ଜିନିଷଗୁଡ଼ାକ ଚାଳିଶ ବା ପଚାଶ ବର୍ଷର ପୁରୁଣା।

ବିଶ୍ୱାସ : ଏବେ ଏଠି ସଇଲା। (ଦୁଆରବନ୍ଧ ଆଡ଼କୁ ଯାଏ) ଡ୍ରଇଂରୁମ୍‌ରେ ଅଥଚ ସବୁ କିଛି ଏକଦମ୍ ନୂଆ ଆଉ ଚକ୍ ଚକ୍।

ଲତା : ସେଗୁଡ଼ାକ ଆଗରୁ ସେଠି ନ ଥିଲା। ଏଇଟା ଥିଲା ଡ୍ରଇଂରୁମ୍। ସାମ୍ନାରେ ଗୋଟେ ବିରାଟ ଘାସ ପଡ଼ିଆ। ସାମ୍ନାଟାକୁ ବଢ଼େଇଛି ମୋ' ମାଆ, ଖୁବ୍ କମ୍ ଲୋକଙ୍କୁ ଆମେ ଭିତରକୁ ଆସିବାକୁ ଦେଉ। କେବଳ ବାଦ୍ୟକାର ଆଉ ନାଚ କରୁଥିବା ଲୋକେ ଆସନ୍ତି। ଅନ୍ୟମାନଙ୍କୁ ଆମେ ଡ୍ରଇଂରୁମ୍‌ରୁ ହିଁ ବିଦାୟ କରି ଦେଉ।

ବିଶ୍ୱାସ : ମୁଁ ତ ନା ବାଦ୍ୟକାର ନା ନାଚ କରୁଥିବା ଲୋକ। ମତେ କାହିଁକି ଡ୍ରଇଂରୁମ୍‌ରୁ ବିଦାୟ କରି ଦଉନ?

ଲତା : ତୁମେ ହଉଚ ପରିବାରର ଗୋଟେ ଅଂଶ।

ବିଶ୍ୱାସ : ଏଯାବତ୍ ନୁହେଁ। ଆମ ବାପାମା'ଙ୍କ ମଞ୍ଜୁରି ଏବେ ବି ମିଳିବାର ଅଛି।

ଲତା : କ'ଣ ହେଲା ସେମାନଙ୍କର? ବସ। ଏବେ ମୁଁ ମୁଥେୟାକୁ ଡାକୁଛି। ଆମ ବଂଶୀବାଦକ। ଦେଖେ ସେମାନେ ଏବେ କୋଉଠି?

ବିଶ୍ୱାସ : କୁଆଡ଼େ ଯାଉଛ?

ଲତା : ଫୋନ୍ ଲଗେଇବାକୁ।

ବିଶ୍ୱାସ : (ଗୋଟେ ପୁରୁଣାକାଳିଆ ଫୋନ୍ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରେ) - ଏ ଫୋନ୍‌ରେ କ'ଣ ଅସୁବିଧା ଅଛି ?

ଲତା : ଏଇଟା ବି ସେଇ ପୁରୁଣା ଦୋକାନରେ ମିଳୁଥିବା ଜିନିଷଙ୍କ ଭିତରୁ ଗୋଟେ। ଆଣ୍ଟିକ୍ ଶୋ। ଏଇଟା ଗୋଟେ ଅକାମୀ.... ଅକାମୀ। (ଡ୍ରଇଂ ରୁମ୍‌କୁ ଯାଏ)

ବିଶ୍ୱାସ : (ଘର ଭିତରେ ବୁଲିବା ଏବଂ ମୁଣ୍ଡ ହଲାଇବା)

ମୁଁ ଏବେ ଏମିତିକା ଶାଶୂ ଶଶୁରଙ୍କୁ ପାଇବାକୁ ଯାଉଛି ଯାହାଙ୍କ ଘର ପାଗଳ କରିଦବ।

(ଯେତେବେଳେ ଲତା ଫୋନ୍‌ରେ କଥା ହୁଏ, ବିଶ୍ୱାସ ଘର ସାରା ଘୂରି ଦେଖୁଥାଏ। ଗୋଟେ ସୁସଜ୍ଜିତ କପ୍‌ବୋର୍ଡ଼ ଦେଖି ସେ ଉତ୍ସୁକ ହେଇଯାଏ)

ଲତା : ହ୍ୟାଲୋ : ମୁଥୁ ଅଙ୍କଲ୍ ? ଲତା କହୁଛି। ହଁ ମୁଁ ଭଲ ଅଛି... ନା ସେମାନେ ଫେରି ନାହାନ୍ତି। ସେଇଥି ପାଇଁ ଟେଲିଫୋନ୍ କରୁଛି ଜାଣିବାକୁ... ଆଃ... ଚୁ... ଚୁ... ବହୁତ ଦୁଃଖ କଥା। ଗୁଡ଼ାଏ ହାଡ଼ ଭାଂଗିଛି ? କେମିତି ଏମିତି ହେଲା ? କ'ଣ ? ନିଜ ଧୋତିରେ ଝୁଣ୍ଟି ପଡ଼ିଲେ ?... ବହୁତ ଦୁଃଖ ଖବର। ଜାଣିଛ କି ମମି ଆଉ ଡାଡି କେତେବେଳେ... ? ହଁ, ହଁ। ମୁଁ ନିଶ୍ଚୟ ତାଙ୍କୁ ଭେଟିବାକୁ ଯିବି। ନା, ମୁଁ କଳା ସହ କଥା ହେବାକୁ ଚାହୁଁନି। ତା' ପାଇଁ ମୁଁ ଟେଲିଫୋନ୍ କରିନି। ନା... ନା... ଆମର ଝଗଡ଼ା ହେଇନି। (ଖୁବ୍ ଚୁପ୍‌ଚାପ ସ୍ୱରରେ) ଅଙ୍କଲ, କହିପାରିବ, କେତେବେଳେ ମମି ଆଉ ଡାଡି ହସ୍‌ପିଟାଲ୍ ଛାଡ଼ିଛନ୍ତି ? ବାସ୍, ଧନ୍ୟବାଦ। ମୁଁ କଳାକୁ ପରେ ଟେଲିଫୋନ୍ କରିବି। ଆଉ ନିଶ୍ଚୟ ହସ୍‌ପିଟାଲ୍ ଯିବି। ହଁ ହଁ କଳାକୁ ବି ମୋ ସାଙ୍ଗରେ ନେଇଯିବି... ନା ନା ଜମ୍ମାରୁ ଭୁଲିବିନି। ସାଙ୍ଗରେ କିଛି କ୍ଷୀରି ବି ନେଇଯିବି। କ୍ଷମା କରିବ, କ୍ଷୀର ବୋଧେ ଉତୁରି ଯାଉଛି। ଯାଏ...। (ଫୋନ୍ ତଳେ ରଖି ଜିଅନ୍ତି ଏବଂ ଷ୍ଟେଜ ତଳ ମହଲା ଦେଇ ରୋଷେଇ ଶାଳକୁ ଯାଆନ୍ତି)

ବିଶ୍ୱାସ : କୁଆଡ଼େ ଯାଉଛ ?

ଲତା : ଆମ ସମସ୍ତଙ୍କ ପାଇଁ କଫି କରୁଛି । (ଅଟକି ଯାଇ) ତମ ପାଇଁ ବର୍ଣ୍ଣଭିଟା କରିବି, ଯଦି ତୁମେ ଚାହିଁବ । (ବିଶ୍ୱାସ କପ୍ ବୋର୍ଡ୍‌କୁ ଦେଖୁଥିବାର ଦେଖେ) ଖୁବ୍ ସୁନ୍ଦର ହେଇଛି, ନୁହଁ ? ଏକଦମ୍ ନିଦା ରୋଜ୍‌ଉଡ୍‌ରେ ତିଆରି । ଆଜିକାଲି ଏମିତିକା କପ୍‌ବୋର୍ଡ଼ ସେମାନେ କରୁ ନାହାନ୍ତି ।

ବିଶ୍ୱାସ : ଯା' ଭିତରେ କ'ଣ ଅଛି ?

ଲତା : କେବଳ ବହି ଆଉ ବହି । (ବିଶ୍ୱାସ କପ୍‌ବୋର୍ଡ଼ ଖୋଲେ) । ସାବଧାନ । ପ୍ରାୟ ସବୁ ବହିଗୁଡ଼ାକ ହଳଦିଆ ପଡ଼ି ଯାଇଛି । ଛୁଇଁବା ମାତ୍ରେ ପୃଷ୍ଠାଗୁଡ଼ାକ ଫାଟି ଯିବ ।

ବିଶ୍ୱାସ : (ଗୋଟେ କାମକରା ସୁନ୍ଦର ଶାଲ୍ ବାହାର କରେ) ଓ, ବାଃ । ଏଇଟା ଦେଖ ତ !

ଲତା : ଖୁବ୍ ସୁନ୍ଦର ହେଇନି ?

ବିଶ୍ୱାସ : ଏଇଟାକୁ ମୁଁ ଯୌତୁକ ନେବା ଲାଗି କହିବି ।

ଲତା : ନା, ସେ କେବେବି ଯାକୁ ଦେବେନି ତୁମକୁ ।

ବିଶ୍ୱାସ : କାହିଁକି ଦେବେନି ?

ଲତା : ସେଇ ଗୋଟିଏ କାରଣ, ଯେଉଁଥିପାଇଁ ସେ ଘର ବି ବିକ୍ରି କରୁ ନାହାନ୍ତି । ଏଇଟା ବି ମୋ ଜେଜେବାପାଙ୍କର ।

ବିଶ୍ୱାସ : ଲାଗୁଛି, ତୁମକୁ ସେ ଛାଡ଼ିବା ପରେ ମୁଁ ନିଜକୁ ଭାଗ୍ୟବାନ୍ ମନେ କରିବି ।

ଲତା : (ବିଶ୍ୱାସ ଠାରୁ ଶାଲ୍ ନେଇଯାଏ) । ମହୀଶୁର୍ ମହାରାଜା ମୋ ଜେଜେବାପାଙ୍କୁ ଏ ଶାଲ୍‌ଟା ଉପହାର ଦେଇଥିଲେ । ସେ ଏଇଟା ଆଉ ଗୋଟେ ପୁରସ୍କାର ଦଶହରା ଦିନ ମହାରାଜାଙ୍କ ଠାରୁ ପାଇଥିଲେ ।

ବିଶ୍ୱାସ : କ'ଣ ପାଇଁ ?

ଲତା : ମାଆ ଥରେ ମୋତେ କହିଥିଲା, ହେଲେ ମୁଁ ପୂରାପୁରି ଭୁଲି ଯାଇଛି । ସେ କହେ, ଏଇଟା କୁଆଡ଼େ ଜେଜେବାପାଙ୍କର ସବୁଠୁ ମୂଲ୍ୟବାନ

ସଂପତ୍ତି। ଯେତେ ଗରମ ପଡ଼ିଥାଉ ନା କାହିଁକି ଯେବେବି ଆମ ଘରକୁ କେହି ବୁଲିବାକୁ ଆସିଲେ ଜେଜେବାପା ଏଇଟାକୁ ଚଟାପଟ ଘୋଡ଼େଇ ହେଇ ପଡ଼ିବେ। ଶିକ୍ଷିତ ଆଉ ବୁଦ୍ଧିଜୀବୀଙ୍କ ଭିତରେ ସେ ଥିଲେ ପ୍ରଥମ ଲୋକ ଯିଏ ସୁଟ୍ ଟାଇ ଛାଡ଼ି ସାଧାରଣ ଉତ୍ସବ ମାନଙ୍କରେ ଧୋତି, କୁର୍ତ୍ତା ଆଉ ଶାଲ ହିଁ ବ୍ୟବହାର କରୁଥିଲେ। (ଶାଲ୍‌ଟିକୁ କପ୍‌ବୋର୍ଡ଼ ଭିତରେ ରଖେ) ଏବେ ବସ, ମୁଁ ମୋ କାମ କରେ।

ବିଶ୍ୱାସ : ରୋଷେଇ ଘରେ ବସି ମୁଁ ତୁମକୁ ଦେଖି ପାରିବି କି ?

ଲତା : ନା, ଧନ୍ୟବାଦ, ମୋତେ ଖୁବ୍ ନର୍ଭସ ଲାଗିବ।

ବିଶ୍ୱାସ : ଯେତେବେଳେ ମୋ ମାଆ ଏଠିକି ଆସିବ, ସେ ତୁମକୁ କଫି କିମିତି ତିଆରି କରୁଛି ପୂରାପୁରି ଦେଖିବ। ପ୍ରସ୍ତୁତ ହେଇ ଥାଅ।

ଲତା : (ସେଠୁ ଯାଉ ଯାଉ) ଆଗ ତ ମୋ ବାପା ମା' ତୁମକୁ ଦେଖିବେ– ତୁମେ କେମିତି ମାଙ୍କଡ଼ାମୀ କରୁଛ। (ବାହାରି ଯାଏ)

ବିଶ୍ୱାସ : (ପଛରୁ ଡାକେ) ମୋ ମା'ର ଆଖି ଗୁଡ଼ାକ ଏକଦମ୍ **ଛଞ୍ଚାଣ ପରି !** ଏମିତିକି, ସେ ତୁମ ଗୋଡ଼ ଗୁଡ଼ାକ ଉପରକୁ କୋଉ ପର୍ଯ୍ୟନ୍ତ ସିଝା ପଡ଼ିଛି। ସେଇଟା ବି ପରଖିବ, ସେଇଥିରୁ ସେ ଜାଣି ପାରିବ– ତୁମେ ମିନିସ୍କର୍ଟ ପିନ୍ଧ ନା ନାହିଁ !

(ବିଶ୍ୱାସ ଏଣେତେଣେ ଘୂରି ବୁଲୁଥାଏ। ଗୋଟେ ବହି ଥାକ ଦେଖି ସେଥିରୁ ଗୋଟେ ବହି ଅଧା କାଢ଼େ। ପୁଣି କ'ଣ ଭାବି, ତାକୁ ରଖିଦିଏ ଏବଂ ହାତ ଝାଡ଼ି ସଫା କରେ। ପୁରୁଣାକାଳିଆ ଫୋନ୍ ପାଖକୁ ଯାଏ, ରିସିଭର ଉଠାଏ ଆଉ ନିଜ କାନ ପାଖରେ ରଖେ। ଫୋନ୍ ରିଂ ହେବା ଶୁଣି ଚମକି ପଡ଼େ ଏବଂ ତତ୍‌କ୍ଷଣାତ୍ ରିସିଭର ରଖିଦିଏ।)

ଲତା : (ଭିତରୁ ବଡ଼ ପାଟିରେ କହେ), ବିଶ୍ୱାସ ଧର ତ ସେଇଟା।

ବିଶ୍ୱାସ : (ଚାରିଆଡ଼କୁ ବୋକାଙ୍କ ଭଳି ଚାହେଁ) କ'ଣ ? କୋଉଠି ? (ଏଇଟା ଡ୍ରଇଂରୁମ୍‌ରୁ ବୋଲି ଜାଣିପାରେ) ହଁ, ହଁ, ପାଇଗଲି। ଧରୁଛି... ଧରୁଛି। (ଡ୍ରଇଂରୁମ୍‌କୁ ଯାଏ ଏବଂ ଟେଲିଫୋନ୍ ଧରେ) ହ୍ୟାଲୋ.... ? ହଁ

ଏଇ ନମ୍ବର ତ। ହଁ ଏଇଟା ଜୟରାଜ ପାରେଖଙ୍କ ଘର। ନା, ସେ ଘରେ ନାହାନ୍ତି... ମୁଁ? ମୁଁ କିଏ ? ମୁଁ... ମୁଁ... କେହି ନୁହେଁ। ମାନେ... ମାନେ...ଚାକର।

(ଦକ୍ଷିଣ ଭାରତୀୟଙ୍କ କହିବା ଶୈଳୀରେ ନୁହେଁ) ମୁଁ ଚାକର ଏକା, ସାର୍। ସାର ଆଉ ଆମ୍ମା ବାହାରକୁ ଯାଇଛନ୍ତି ଏକା, ହଁ... ମୁଁ ଧରି ପକେଇଲି ଏକା।

ଲତା : (ପ୍ରବେଶ) ବିଶ୍ୱାସ, ଫୋନ୍‌ରେ କିଏ ?

ବିଶ୍ୱାସ : କେବେ ଆଇବେ ? କହିକି ଯାଇ ନାହାନ୍ତି ଏକ୍କା, ଗୋଟେ ନିମିଟ୍ ଆଜ୍ଞା, ସାନ ଆମ୍ମାଙ୍କୁ ପଚାରୁଚି ଏକ୍କା। (ହଲ୍‌କୁ ଆସିଯାଏ) ତମ ବାପାଙ୍କୁ କିଏ ଜଣେ ଖୋଜୁଛନ୍ତି।

ଲତା : କିଏ ?

ବିଶ୍ୱାସ : ସେ କହି ନାହାନ୍ତି। ତମେ କଥା ହଉନ କାହିଁକି ?

ଲତା : ମୁଁ ଏବେ ବ୍ୟସ୍ତ ଅଛି। ତାଙ୍କ ନମ୍ବରଟା ନେଇ ଯାଅ, ଆଉ କୁହ ବାପା ଆସିବା ପରେ ତାଙ୍କୁ ଫୋନ୍ କରିବେ, ଯଦି ମୁଥେୟା ଅଙ୍କଲ ହେଇଥାନ୍ତି, ତେବେ କୁହ ସେମାନେ ଏଇଲେ ଆସିଲେ ଆଉ ଗଲେ, କାଲି ସକାଳ ଯାଏଁ ଫେରିବେନି।

(ଲତା ରୋଷେଇଶାଳକୁ ବାହାରି ଯାଏ ଏବଂ ବିଶ୍ୱାସ ଫେରିଯାଏ ଡ୍ରଇଂରୁମ୍‌କୁ)

ବିଶ୍ୱାସ : (ଫୋନ୍‌ରେ) - ହ୍ୟାଲୋ... ସାନ ଆମ୍ମା କହିବେ। ନାଁଟା କୁହନ୍ତୁ ଏକ୍କା କିସ କହିବାର ଅଛି କି ? କିସ୍ କହିଲେ ଆଜ୍ଞା ? ଲେଖିବା ଜାଣିଛି ଏକ୍କା। ଇଙ୍ଗ୍‌ଲିସ୍‌ରେ ବି.ଏ. ପଢ଼ିଛି ଆଜ୍ଞା। ଆଜ୍ଞା... ଆଜ୍ଞା। କୁହନ୍ତୁ, ଭଲ ନାଆଁଟା ?

(ଲେଖିଲା ପରି) ଚଗନ୍‌ଲାଲ୍ ଚନ୍ଦାନି। ଚଗନ୍‌ଲାଲ୍ ଚନ୍ଦାନି, ଠିକ୍ ଅଛି ?

ଆଜ୍ଞା ମୁଁ କହୁଛି ଏବେ ଏକ୍କା... ଏ ଜାଗା... କିଣିବାକୁ ଚାହୁଁଛନ୍ତି... ଜାଗା... ସଂପତ୍ତି। ନବେ ଲକ୍ଷ ଦେବେ... ତା' ଉପରେ ବି କଥା

ହେଇ ପାରିବେ। (ପଢ଼େ) ଆପଣ ଏ ସଂପତ୍ତି କିଣିବାକୁ ଚାହାନ୍ତି। ନବେ ଲକ୍ଷ ପର୍ଯ୍ୟନ୍ତ ଦେବେ... ତା'ପରେ ବି କଥା ହେଇ ପାରିବେ। ଏଇଆ ତ ଆଜ୍ଞା ?... ଦେଖନ୍ତୁ ମୁଁ କହିଚି... (ହଠାତ୍ ସ୍ୱର ବଦଳାଇ) ଟିକିଏ ଅପେକ୍ଷା କରନ୍ତୁ! ଆପଣ ସେଇ ଲୋକ ଯିଏ ସପିଂ କମ୍ପ୍ଲେକ୍ସ ତିଆରି କରିବାକୁ ଚାହୁଁଛନ୍ତି, ଠିକ୍ କହିଲି ନା ? ମୁଁ କିଏ ସେ କଥାରେ ମୁଣ୍ଡ ଖେଳାନ୍ତୁନି, ଶ୍ରୀଯୁକ୍ତ ଜୟରାଜ ପାରେଖଙ୍କ ପାଖରୁ ଆପଣଙ୍କ ପାଇଁ ଗୋଟେ ଖବର ଅଛି। ଏବେ ବି ସେ ତାଙ୍କ ନିଷ୍ପତ୍ତି ବଦଳାଇ ନାହାନ୍ତି। ସେ ଆଦୌ ଇଚ୍ଛୁକ ନୁହଁନ୍ତି। ତାଙ୍କ ଭାବି ଜ୍ୱାଇଁଙ୍କ ପାଖରୁ ବି ଗୋଟେ ଖବର ଅଛି। ଦଶବର୍ଷ ପରେ ଟେଲିଫୋନ୍ କରନ୍ତୁ। ହୁଏତ ଦଶବର୍ଷ ପରେ ସେ ରାଜି ହେଇ ପାରନ୍ତି। ଗୁଡ୍ ବାଏ।

(ଟେଲିଫୋନ୍ ରଖିଦିଏ ଏବଂ ହଲ୍‌କୁ ଫେରି ଆସେ)

ଲତା : (ପ୍ରବେଶ କରି) କିଏ ଥିଲା ?.

ବିଶ୍ୱାସ : କେହି ନୁହଁ। ଗୋଟେ ଗରିବ ପିଲା ଚାକର କାମ କରିବାକୁ ଚାହୁଁଥିଲା। ଚାକର ଦରକାର କି ନାହିଁ ବୋଲି ପଚାରୁଥିଲା।

ଲତା : ଚାକର ପିଲା ? ଏବେ ବି ମିଳୁଛନ୍ତି ?

(ପ୍ରସ୍ଥାନ)

(ବିଶ୍ୱାସ ବସିବାକୁ ଯାଉ ଯାଉ ଅଟକି ଯାଏ। କପ୍‌ବୋର୍ଡ୍‌କୁ ଲକ୍ଷ୍ୟ କରେ। ସେ ଆଡ଼କୁ ଯାଏ ଏବଂ ଖୋଲେ। ସେ ଚାରି ଆଡ଼କୁ ଚାହେଁ- ଲତା ଆଖ ପାଖରେ ଅଛି କି ନାହିଁ- ଜାଣିବାକୁ। ଆଶ୍ୱସ୍ତ ହୁଏ ଲତା ସେଠି ନାହିଁ ବୋଲି। ସେ କପ୍‌ବୋର୍ଡ୍‌ରୁ ଶାଲ୍‌ଟିକୁ କାଢ଼େ ଓ ତାକୁ ଘୋଡ଼େଇ ହେଇ ଘର ଭିତରେ ବୁଲେ)

ବିଶ୍ୱାସ : କିମିତିକା ଢେଙ୍କେବୋପା ଥିଲେ ତା'ର! ଭୟଙ୍କର ଥିବେ ନିଶ୍ଚୟ। ଆଶ୍ଚର୍ଯ୍ୟ ହବାରେ କଛି ନାହିଁ ଲତାର ବାପା ଜଣେ ଚଡ଼୍‌ଚିଡ଼ା ଲୋକ ହେଇଥିବେ। (ଗଳା ସଫା କରେ ଏବଂ ତାଙ୍କ ବାପାଙ୍କ ସ୍ୱରରେ କହିବାକୁ ଆରମ୍ଭ କରେ) ତା'ହେଲେ ତୁ ଗୋଟେ ନର୍ତ୍ତକ ହବାକୁ ଚାହୁଁଛୁ। ହାଃ...ହାଃ...ହାଃ। ବାବୁରେ, ଜୀବନରେ ତୁ କିଛି ବି କରି ପାରିବୁନି। ମତେ ଦେଖ୍। ମତେ ଦେଖ୍, କ'ଣ ମୁଁ ନ ପାଇଛି

ଜୀବନରେ। ହଁ, ଦେଖ୍ ଦେଖ୍ ଦେଖ୍। (ଘରର ଫର୍ଣ୍ଣିଚର୍ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରେ) କ'ଣ କହିବାକୁ ଚାହୁଁ ତୁ? ଜୀବନରେ ପଇସା ଛଡ଼ା ଅନେକ କିଛି ଅଛି? ତୁ ଗୋଟାଏ ବାଲୁଙ୍ଗା, ଅକୃତଜ୍ଞ... ଲଫଙ୍ଗା!

(ତା'ର ଦୃଷ୍ଟି ଆଢୁଆଳରେ ପ୍ରବେଶ କରନ୍ତି ଜୟରାଜ ପାରେଖ ଓ ରତ୍ନା ପାରେଖ। ସେମାନେ ଠିଆ ହେଇଯା'ନ୍ତି ଆଉ ତା'ର ବେଶଭୂଷାକୁ ଚାହିଁ ରହନ୍ତି। ସେମାନେ ଦୁହେଁ ଏବେ ଷାଠିଏ ପାଖାପାଖି। ମାତ୍ର ବର୍ଷ ବର୍ଷର ଶିକ୍ଷା ଯୋଗୁଁ ଦେଖିବାକୁ ଖୁବ୍ ସିଧାସଳଖ ଏବଂ ଫୁର୍ତ୍ତିମାନ୍।)

ବିଶ୍ୱାସ : (ନାଟକୀୟ ଭାବେ କହି ଚାଲିଥାଏ) ନାଚ କରି ତୁ କୁଆଡ଼େ ଯିବୁ? କୁଆଡ଼େ ବି ନୁହଁ! ନର୍ତ୍ତକ ହେଇ କ'ଣ ପାଇବୁ ତୁ? କିଛି ବି ନୁହଁ! ରାସ୍ତାରେ ଯାଉଥିବାବେଳେ ଲୋକେ ଆଙ୍ଗୁଠି ଦେଖେଇବେ- 'କିଏ ଏଇ ଲୋକଟା?' 'ସେ ଗୋଟେ ନାଚବାଲା', 'କ'ଣ କରେ ସେ?' 'ସେ ଗୋଟେ ନାଚବାଲା' 'ସେ କଥା ଠିକ୍ ଅଛି, ହେଲେ କ'ଣ କରେ ସେ?' 'ସେ ଗୋଟେ ନା... (ହଠାତ୍ ସେ ଦୁହିଁଙ୍କୁ ଦେଖି ପକାଏ) ସାର୍! (ବୋକାଙ୍କ ଭଳି ହସେ ଦାନ୍ତ ନେଫେଡ଼େଇ ଆଉ ହତାଶା ଭାବ ରଖି କାନ୍ଦି ଉଠାଏ ପକାଏ) ଅପେକ୍ଷା କରି କରି ବୋର୍ ହେଇ ଯାଇଥିଲି... (ଜୟରାଜ ଏବଂ ରତ୍ନା କିଛି କୁହନ୍ତିନି) ମୁଁ ନାଚିବାକୁ ଭଲ ପାଏ। ନା ଡିସ୍କୋ କି ଅନ୍ୟ କିଛି ନୁହଁ। ଆମ ନୃତ୍ୟ ସଂପର୍କରେ ଆପଣ ଜାଣିଛନ୍ତି। ତା' ଭିତରେ ଏତେ ସବୁ ଗଭୀର କଥା ଅଛି। କ'ଣ ମୁଁ କହୁଛି ଆପଣ ବୁଝିପାରୁଛନ୍ତି? (ଚିଲ୍ଲେଇ) ଲତା!

ଜୟରାଜ : ଦୟା ପୂର୍ବକ ସେ ଶାଲ୍‌କୁ ତା' ଜାଗାରେ ରଖ ପ୍ରଥମେ।

ବିଶ୍ୱାସ : ଆଜ୍ଞା... ଆଜ୍ଞା... (ତରତର ହେଇ ବେଠିକ୍ ଭାବେ ଚଉତାଇବାକୁ ଚେଷ୍ଟା କରେ)... ମୁଁ ଦୁଃଖିତ। ଏଥଟା ଗୋଟେ ଏତେ ସୁନ୍ଦର ଶାଲ୍!

ରତ୍ନା : ମତେ ଦେଇ ଦିଅ। (ହାତ ବଢ଼ାଏ ସେ) ବିଶ୍ୱାସ ତାଙ୍କୁ ଶାଲ୍‌ଟା ଦେଇଦିଏ, ସେ ଠିକ୍ ଭାବରେ ତାକୁ ଚଉତାନ୍ତି ଏବଂ ପରିଷ୍କାର ଭାବେ କପ୍‌ବୋର୍ଡ୍‌ରେ ରଖି ଦିଅନ୍ତି। ଜୟରାଜ ଏକା ଆଖିରେ ଚାହିଁ ରହିଥାନ୍ତି ବିଶ୍ୱାସକୁ। ରତ୍ନା ବସି ପଡ଼ନ୍ତି।

ରତ୍ନା : ବସ। (ବିଶ୍ୱାସ ଖୁବ୍ ଅସ୍ୱସ୍ତିକର ଭାବେ ବସେ। ଜୟରାଜ ଆଡ଼କୁ ଆଦୌ ଚାହେଁ ନାହିଁ।) ଠିକ୍ ହେଇ ସେ। ଜୟରାଜ ବସିବାକୁ ଯାଉ ଯାଉ ହଠାତ୍ ଅଟକି ଯାଏ ଏବଂ ଚିତ୍କାର କରେ) ଲତା ! (ତା'ପରେ ବସିପଡ଼େ)

(ଅଶ୍ୱସ୍ତିକର ନିରବତା ରହିଥାଏ ଘର ସାରା)

ଲତା : (ପ୍ରବେଶ କରି) ତୁମେ ଆସିଲଣି ବୋଲି ମୁଁ ଶୁଣିପାରିନି। ଏବେ ମୁଁ ମୁଥେୟା ଅଙ୍କଲ୍ଙ୍କ ସହ କଥା ହେଉଥିଲି। ସେ କହିଲେ ତୁମେ କେବେଠୁ ଚାଲିଗଲଣି। ଏତେ ଡେରି କାହିଁକି ହେଲା ? (ଚାରିଆଡ଼େ ପୁଣି ନୀରବତା) ଛାଡ଼, ଆମ ପାଇଁ ମୁଁ କଫି କରି ଦେଇଛି, ଆଉ ଆମ ଅତିଥିଙ୍କ ପାଇଁ ବର୍ଣ୍ଣଭିଟା ବି। ଚଟାପଟ ତିଆରି ହେଇଥିବା କଫି ତାଙ୍କର ପସନ୍ଦ ନୁହଁ। ମାମା, ତାଙ୍କ ପାଇଁ କେବେ ତୁମେ ଫିଲଟର କଫି କରିଦବ ତ। (ନିଜେ ଅସ୍ୱସ୍ତିକର ବୋଧ କରେ)। ଏଇ ଗୋଟେ ମିନିଟ୍‌ରେ ମୁଁ ଆସୁଛି। ତୁମ ଭିତରେ ଚାଲିଥିବା ସୁନ୍ଦର ଆଳାପରେ ମୁଁ ବାଧା ସୃଷ୍ଟି କଲି। ସରି। (ପ୍ରସ୍ଥାନ)

(ସମସ୍ତେ ପରସ୍ପରକୁ କଟମଟ କରି ଚାହିଁ ରହିଥାନ୍ତି)

ରତ୍ନା : (ଚିଲ୍ଲେଇଲା ସ୍ୱରରେ)- ଏକଦମ୍ ସାଂଘାତିକ ! ଆମେ ଏବେ କ'ଣ କରିବାକୁ ଯାଉଛେ ?

ଜୟରାଜ : ବ୍ୟସ୍ତ ବିବ୍ରତ ହବାର କିଛି ନାହିଁ।

ରତ୍ନା : ଆଗରୁ ଏମିତି କେବେ ବି ହେବନି। ମୋ ସାରା ଜୀବନ କାଳରେ।

ଜୟରାଜ : ଆମ ସାରା ଜୀବନ କାଳରେ....

ରତ୍ନା : ଆମ ସାରା ଜୀବନ କାଳରେ, ମୋର ମନେ ପଡୁନି କେବେ ଏମିତି ସମସ୍ୟାରେ ପଡ଼ି ନ ଥିଲି।

ଜୟରାଜ : ଏଇଟା ଗୋଟେ ସମସ୍ୟା ନୁହଁ।

ରତ୍ନା : ସମସ୍ୟା, ଅସୁବିଧା, ଯାହା ବି କୁହ।

ଜୟରାଜ : ଆମର ସମସ୍ୟା ପୂର୍ବରୁ ବି ଥିଲା।

ରତ୍ନା : କିନ୍ତୁ ଏମିତିକା କେବେ ନ ଥିଲା। ହେ ଭଗବାନ! ଏବେ କରିବୁ କ'ଣ ଆମେ ?

ଜୟରାଜ : (ସାନ୍ତ୍ୱନା ଦେଇ), କିଛି ଗୋଟେ ଆମକୁ ଚିନ୍ତା କରିବାକୁ ପଡ଼ିବ ପ୍ରଥମେ, ତୁମେ ଚୁପ୍ ରୁହ।

(ରତ୍ନା ଚୁପ୍ ହେଇଯା'। ବିଶ୍ୱାସ ସେମାନଙ୍କ ଆଗରେ ଗୋଟେ ବୋକାଙ୍କ ଭଳି ଗପି ଚାଲେ)

ବିଶ୍ୱାସ : ଦେଖନ୍ତୁ, ମୁଁ ଜାଣିଛି, ପ୍ରଥମ ଦେଖାରେ ଗୋଟେ ଭଲ ଧାରଣା ମୁଁ ସୃଷ୍ଟି କରି ପାରିନି ଆପଣମାନଙ୍କ ପାଖରେ। କିନ୍ତୁ ମୋତେ ଟିକେ ଆରାମ୍ ଲାଗିବ ଯଦି ଆପଣମାନେ ମୋତେ ଗୋଟେ ସମସ୍ୟା ବା ଅସୁବିଧା ବୋଲି ନ ଭାବନ୍ତି।

ରତ୍ନା : କ'ଣ କହିବାକୁ ଚାହୁଁଛ ତମେ ?

ବିଶ୍ୱାସ : (କିଛି ଶବ୍ଦ ପାଉନି କ'ଣ କହିବ, ଟିକେ ଶଙ୍କିବା ଭଳି ହସ) : ଠିକ୍ ସେଇ କଥା ଆପଣଙ୍କୁ ମୁଁ ପଚାରି ପାରେ କି ?

ଜୟରାଜ : ଆମେ ତୁମ ବିଷୟରେ କଥା ହେଉ ନାହୁଁ। ତୁମକୁ ଆମେ ଜାଣିନୁ ବି।

ବିଶ୍ୱାସ : ମୋ ନା ହେଉଛି ବିଶ୍ୱାସ, ଆଉ...

ଜୟରାଜ : (ଚିଡ଼ି ଯାଇ) ସେ କଥା ଆମେ ଜାଣୁଁ। ହେଲେ ତୁମକୁ ଆମେ ଏତେ ନିବିଡ଼ ଭାବେ ଜାଣିନୁ ଯେ ତୁମକୁ ଗୋଟେ ସମସ୍ୟା ବୋଲି ଭାବିବୁ। ବୁଝିଲ ?

ବିଶ୍ୱାସ : ଓହୋ, ଏଇଟା ଅନ୍ତତଃ ଗୋଟେ ଆଶ୍ୱାସନା !

ଜୟରାଜ : କ'ଣ ? ଏଇଆ, ତୁମକୁ ଆମେ ଜାଣିନୁ ?

ବିଶ୍ୱାସ : ନା ନା, ଏଇଆ ଯେ ଆପଣମାନେ ମୋତେ ଗୋଟେ ସମସ୍ୟା ବୋଲି ମନେ କରି ନାହାନ୍ତି।

ରତ୍ନା : ଦଶଦିନ ! ବାସ୍, ଆମ ପାଖରେ କେବଳ ଏତିକି ହିଁ ଅଛି।

ଜୟରାଜ : ଆମେ କାହାକୁଂ ନା କାହାକୁ ପାଇଯିବା

ରତ୍ନା : କାହାକୁ ? ସମସ୍ତେ ତ କୋଉଠି ନା କୋଉଠି ବୁକ୍ ହେଇ ସାରିଛନ୍ତି ।

ଜୟରାଜ : ଆମେ ଶେଷାଦ୍ରୀକୁ ପଚାରିବା । ସେ ତ ଆମ ସଂସ୍ଥା ବିଷୟରେ ଜାଣେ ।

ରତ୍ନା : ଶେଷାଦ୍ରୀ ? ତୁମେ ପାଗଳ ନା କ'ଣ ? ସେ ତ ଚନ୍ଦ୍ରକଳା ସହ ଏବେ ରିହର୍ସଲ୍ କରୁଛି ।

ଜୟରାଜ : ତାକୁ ମାତ୍ର ଗୋଟେ ଦିନ ଦରକାର ।

ରତ୍ନା : ତା' ପାଖରେ ସମୟ ନାହିଁ ।

ଜୟରାଜ : ଦଶଦିନ ଭିତରେ ସେ ସବୁବେଳେ ଚନ୍ଦ୍ରକଳା ସହ ରିହର୍ସଲ୍ କରୁ ନ ଥିବ ।

ରତ୍ନା : ଯେଉଁ ସମୟ ଚନ୍ଦ୍ରକଳା ସହ ରିହର୍ସଲ କରୁ ନ ଥାଏ, ସେତେବେଳେ ତା' ପାଖରେ ଶୋଉଥାଏ ସେ ।

ଜୟରାଜ : ତୁମେ ସଠିକ୍ ଭାବେ କଥାଟା ଜାଣିନ । ଗୁଜବକୁ ତୁମେ କାନ ଦେବା ଠିକ୍ ନୁହଁ ।

ରତ୍ନା : ଏଇଟା ଗୁଜବ ନୁହଁ । ମୁଁ ନିଜ ଆଖିରେ ଏ ଦୃଶ୍ୟ ଦେଖିଛି ।

ଜୟରାଜ : କେବେ ?

ରତ୍ନା : ଆମେ ଯେତେବେଳେ ମସ୍କୋରେ ଥିଲେ, ହୋଟେଲରେ । ଭୋର୍ ତିନିଟା ହବ, ତା' ରୁମ୍‌କୁ ସେ କରିଡ଼ର ଆଡୁ ଆସି ଛପି ଛପି ପଶିଗଲା ।

ଜୟରାଜ : ଭୋର୍ ତିନିଟା ବେଳେ ହୋଟେଲ କରିଡ଼ର ପାଖେ ତମେ କ'ଣ କରୁଥିଲ ?

ରତ୍ନା : ଠିଆ ହେଇଥିଲି ଦେଖିବାକୁ ତୁମେ କାହା ରୁମ୍‌ରେ ଛପି ଛପି ପଶୁଛ ।

ଜୟରାଜ : ତଳ ମହଲାରେ ମୁଁ ତ ଯକ୍ଷଗାନ ଦଳଙ୍କ ସହ ବସି ଭୋଡ଼କା ପିଉଥିଲି ।

ରତ୍ନା : ତୁମେ କିମିତି ଜାଣିଲ ?

ଜୟରାଜ : ମୁଁ କିମିତି ଜାଣିଲି କ'ଣ ?

ରତ୍ନା : ଖୁବ୍ ଜଲଦି ଉତ୍ତର ଏଇଟା । ମୁଁ କୋଉ ରାତିର କଥା କହୁଛି, ତୁମେ କିମିତି ଜାଣିଲ ?

ଜୟରାଜ : ମସ୍କୋରେ ମାତ୍ର ଗୋଟିଏ ରାତିରେ ଡ଼େରି ପର୍ଯ୍ୟନ୍ତ ମୁଁ ବସି ଭୋଡ଼କା ପିଇଥିଲି...

ରତ୍ନା : ଦଶ ବର୍ଷ ତଳର ଘଟଣା ଇଏ। ଏତେ ସ୍ପଷ୍ଟଭାବେ କିମିତି ମନେ ରଖିଛ ତୁମେ ?

ଜୟରାଜ : ଯଦି ଦଶବର୍ଷ ତଳେ ଶେଷାଦ୍ରୀ କରିଡ଼ର ଆଡୁ ଆସି ତା' ରୁମ୍‌ରେ ଛପି ଛପି ପଶି ଯିବା କଥା ତୁମେ ମନେ ରଖି ପାରୁଛ, ତେବେ ମୁଁ ବି ମନେ ରଖି ପାରିବି ଯେ ନିଦ ମଳମଳ ତଥା ଅସ୍ତବ୍ୟସ୍ତ ବେଶଭୂଷାରେ ଥିବା ଦଳେ ଯକ୍ଷଗାନଙ୍କ ସହ ମୁଁ ବସି ମଦ ପିଇଥିଲି।

ବିଶ୍ୱାସ : (ଗଳା ସଫା କରି)... ମୁଁ ଜାଣିଛି ଏଇଟା ମୋ କାମ ନୁହେଁ, ମାତ୍ର ଆପଣମାନେ ଅସଲ ସମସ୍ୟା ଠାରୁ ଦୂରେଇ ଯାଉ ନାହାନ୍ତି କି ? ମୁଁ ଯାହା ବୁଝିଲି, ସମସ୍ୟା ହେଉଛି ଦଶ ଦିନ ଭିତରେ ଆପଣଙ୍କୁ ଜଣେ ଲୋକ ନିହାତି ଦରକାର। ଜଣେ ଲୋକ ଶେଷାଦ୍ରୀ ଭଳି, କିନ୍ତୁ ଶେଷାଦ୍ରୀ ନୁହଁ, କାରଣ ସେ ବହୁତ ବ୍ୟସ୍ତ କୌଣସି କାମରେ... ସେ କାମ ଯାହା ବି ହେଇଥାଉ।

ଜୟରାଜ : ତୁମେ ବହୁତ ବୁଦ୍ଧିମାନ।

ବିଶ୍ୱାସ : (ମାତ୍ରାଧିକ ଆନନ୍ଦିତ) ଧନ୍ୟବାଦ।

ରତ୍ନା : ମାତ୍ର ସେଇଟା ଆମର କି କାମରେ ଆସିବ ?

ଜୟରାଜ : ତୁମେ ଠିକ୍ କହିଚ। ଆସିବନି କାମରେ।

ବିଶ୍ୱାସ : ଆସିପାରେ। ଯଦି ମୁଁ ଜାଣେ ଆପଣ ମାନେ କ'ଣ ଚାହୁଁଛନ୍ତି...

ଲତା : (କଫି ଓ ବର୍ଣ୍ଣଭିଟା ଧରି ପ୍ରବେଶ)। ସରି, ଏତେ ଗୁଡ଼ାଏ ସମୟ ନେଇ ଗଲି। ଗ୍ୟାସ୍ ସରିଗଲା। ସିଲିଣ୍ଡର୍‌କୁ ଏପଟ ସେପଟ କରି ଝାଙ୍କିଲି। (ବିଶ୍ୱାସ ପ୍ରତି) ଭାବୁଥିଲି ତୁମକୁ ଡାକିବି ବୋଲି, ପୁଣି ଭାବିଲି–ଏଇଟା ଠିକ୍ ହବନି। (ରତ୍ନା ପ୍ରତି), ତା'ହେଲେ ତାଙ୍କ ବିଷୟରେ କ'ଣ ଭାବୁଛ ?

ରତ୍ନା : ଆମେ ତା' ବିଷୟରେ କିଛି ଭାବିନୁ।

ଲତା : ଓ, ତା'ହେଲେ ମୋ ବିଷୟରେ ଭାବୁଥିଲ। ବିଶ୍ୱାସ, ତୁମେ ଏମାନଙ୍କୁ ତୁମ ପାଖରେ କିଛି ପଇସାପତ୍ର ନାହିଁ ବୋଲି କହିବ ବୋଲି ମୋର ଧାରଣା। (ରତ୍ନା ପ୍ରତି) ୟା'ଙ୍କୁ ଜମା ବିଶ୍ୱାସ କରନି। କମର୍ସିଆଲ୍ ଷ୍ଟ୍ରିଟ୍‌ରେ ୟା'ଙ୍କ ବାପାଙ୍କର ପରା ଅଧା ସରିକି କୋଠା।

ବିଶ୍ୱାସ : ମୋ ଟଙ୍କା ପଇସା ବିଷୟରେ ଆମେ କଥା ହେଇନାହୁଁ।

ଲତା : ଆଚ୍ଛା, କାହିଁକି ନୁହଁ ?

ବିଶ୍ୱାସ : ସମସ୍ୟା ଜୋର୍‌ରେ ଏବେ ମୁଁ ପଡ଼ିଗଲା ଭଳି ଭାବୁଛି।

ଲତା : ତୁମେ ମୋତେ ସେ କଥା କେବେ ତ କହି ନାହଁ ? ଟଙ୍କା ପଇସାକୁ ନେଇ କିଛି ସମସ୍ୟା ?

ବିଶ୍ୱାସ : ନା ! ମୁଁ କହିବାକୁ ଚାହେଁ ତୁମ ବାପା ଆଉ ମା'ଙ୍କ ପାଇଁ ଗୋଟେ ସମସ୍ୟା ପହଂଚୁଛି ଆଉ ମୁଁ ଏବେ ସେ ସମସ୍ୟା ମଝିରେ ପଡ଼ି ଯାଇଛି।

ଜୟରାଜ : ତୁମେ ପଡ଼ିବ। ସମସ୍ୟାଟା କ'ଣ ତୁମେ ଏବେ ବି ଜାଣିନ।

ରତ୍ନା : ଲତା ! ତୋ'ର ବ୍ୟସ୍ତ ହବା କଥା ଦେଖିବାକୁ ଗଲେ।

ଲତା : କ'ଣ ପାଇଁ ?

ରତ୍ନା : ଶ୍ରୀନିବାସ ତା' ହାତ ଭାଂଗିବାକୁ ନେଇ ତୁ ବ୍ୟସ୍ତ ହବା କଥା। ତୁ ନାଚିବା ବେଳେ ମୃଦଙ୍ଗ କିଏ ବଜେଇବ ?

ଲତା : ହେ ଭଗବାନ୍ ! ଏ କଥା ମୋ ମୁଣ୍ଡରେ ପଶି ନ ଥିଲା। ଅବଶ୍ୟ, ସିଏ ତ ତାଙ୍କ ହାତ ଭାଂଗି ଦେଇଛନ୍ତି !

ରତ୍ନା : କାହିଁକି ତା'ର ଏପରି ହେଲା ? ଯଦି ମୁଥେୟା ଭାବି ନ ଥାନ୍ତି।

ଜୟରାଜ : (ବିଶ୍ୱାସ ପ୍ରତି) ସି.ଭି. ଶ୍ରୀନିବାସ, ଆମ ମୃଦଙ୍ଗବାଦକ।

ରତ୍ନା : ବଂଶୀବାଦକ କି ଭାଓଲିନ୍‌ବାଦକଙ୍କୁ ଛାଡ଼ି ଆମେ କାମ ଚଳେଇ ଦେଇଥାନ୍ତୁ, ହେଲେ ୟ୍ୟା'କୁ ଛାଡ଼ି...

ଜୟରାଜ : (ବିଶ୍ୱାସ ପ୍ରତି) ସେ ତା' ଧୋତିରେ ଝୁଣ୍ଟି ପଡ଼ିଲା।

ଲତା : ଏଇଟା ହଉଚି ସମସ୍ୟା ।

ବିଶ୍ୱାସ : ଏଇଟା ବି ଗୋଟେ ବିଶେଷ ପ୍ରତିଭା।

ଲତା : ସେଇଟା ତ ନିଶ୍ଚୟ। କୌଣସି ବାଦ୍ୟଯନ୍ତ୍ର ବଜାଇବା ଲାଗି ଦରକାର ପଡ଼େ ବିଶେଷ...

ବିଶ୍ୱାସ : ମୁଁ କିନ୍ତୁ ଧୋତି ପିନ୍ଧିବା କଥା କହୁଥିଲି। ଏ ଅଭ୍ୟାସଟାକୁ ଏକଦମ୍ ଶୂନ୍ୟରେ ଚଢ଼ାଇବାକୁ ପଡ଼ିବ। ମୁଁ ଥରେ ଗୋଟେ ଧୋତି ପିନ୍ଧିଥିଲି। ତୁମକୁ ଏଇଟାକୁ ତୁମ ରାସ୍ତାରୁ ହଟାଇବାକୁ ପଡ଼ିବ। ଯିମିତି ଗୋଟେ ଶାଢ଼ି ଭଳି। ମୁଁ କେବେ ଶାଢ଼ି ପିନ୍ଧିନି, ତେଣୁ.....

ଲତା : ବିଶ୍ୱାସ, ଟିକେ ଧ୍ୟାନ ଦବ ? ଆମେ ଏବେ ଗୋଟେ ସମସ୍ୟା ଘେରରେ।

ରତ୍ନା : (ବିଶ୍ୱାସ ପ୍ରତି) ଶ୍ରୀନୁ ହାଫ୍ ପ୍ୟାଣ୍ଟ ଯେବେଠୁଁ ଛାଡ଼ିଚି, ସେଇ ଦିନଠୁଁ ଧୋତି ପିନ୍ଧିବା ଆରମ୍ଭ କରିଛି। ନିଶ୍ଚୟ ସେଦିନ ଗୁଡ଼େ ପିଇ ଦେଇଛି ସେ...

ବିଶ୍ୱାସ : ଠିକ୍ କହିଛନ୍ତି ଆପଣ।

ରତ୍ନା : ବୋକା !

ଲତା : ବିଶ୍ୱାସ, ତୁମ ବର୍ଣ୍ଣଭିଟା ପିଇ ଦିଅ ନା। ଏଇଟା ପ୍ରକୃତରେ ଗୋଟେ ସାଂଘାତିକ କଥା।

(ଜୟରାଜ ରତ୍ନାଙ୍କୁ କଫି ଯାଚନ୍ତି)

ରତ୍ନା : (ହାତ ହଲାଇ ମନା କରନ୍ତି) ମୋ'ର ଦରକାର ନାହିଁ। (ନିଜ ମଥାକୁ ଘଷିବାରେ ବ୍ୟସ୍ତ ରହନ୍ତି)

ଜୟରାଜ : ବ୍ୟସ୍ତ ହେଉ ପଡ଼ିଲେ କିଛି ଲାଭ ହବନି। ଯାହାଙ୍କୁ ଯାହାଙ୍କୁ ଆମେ ଜାଣୁ, ତାଙ୍କ ନାଁ ମନେ ପକାଅ।

ଲତା : ଶେଷାଦ୍ରୀ ଅଙ୍କଲ୍‌ଙ୍କ ସହ କଥା ହେଇଚ କି ?

ରତ୍ନା : ଆଦୌ ନୁହଁ।

ଲତା : ବହୁତ ଭଲ। ସେ ପେଟୁଆ କାମୁକ- ଟାକୁ ଘୃଣା କରେ।

(ରତ୍ନା ଉଠି ପଡ଼ନ୍ତି ହଠାତ୍)

ଜୟରାଜ : କୁଆଡ଼େ ଯାଉଛ ?

ରତ୍ନା : ଆସ୍ପ୍ରୋ ବଟିକା ଆଣିବାକୁ। ମୁଣ୍ଡ ଖୁବ୍ ବିନ୍ଧୁଛି।

ଜୟରାଜ : ସବୁବେଳେ ସେଇ ଆସ୍ପ୍ରୋଗୁଡ଼ାକ ଗିଳୁଛ।

ରତ୍ନା : ନୋଭାଲ୍‌ଜିନ୍ ବି ଚେଷ୍ଟା କରିଥିଲି। କିଛି ଲାଭ ହେଲାନି।

ଜୟରାଜ : ନିଜକୁ ତମେ ମାରିଦବ। ସେ ବଟିକାଗୁଡ଼ାକ ଗିଳିବା ବନ୍ଦ୍ କର।

ରତ୍ନା : ମୋତେ ନବାକୁ ହବ। ଏତେ ଗୁଡ଼ାଏ ଟେନ୍‌ସନ୍ ନେଇ ପାରିବିନି ମୁଁ।

ଜୟରାଜ : ଟେନ୍‌ସନ୍ କ'ଣ? ଏତେ ଗୁଡ଼ାଏ ସମୟ ପଡ଼ିଛି। ବିନା କାରଣରେ ଖାଲି ବ୍ୟସ୍ତ ହେଇ ପଡୁଛ।

ରତ୍ନା : (ଉତ୍ତେଜିତ ହେଇ) ବିନା କାରଣ? ଆମ ଝିଅ ନାଚିବାକୁ ଯିବ, ଯାହା ତା' ଜୀବନକୁ ଗଢ଼ିବ ଅଥଚ ତା' ନାଚ କାର୍ଯ୍ୟକ୍ରମ ପାଇଁ ଗୋଟେ ମୃଦଙ୍ଗ ବାଦକ ନ ଥିବ। ସେ ତା'ର ସବୁଠୁ ଭଲ ନାଚର ପାରଦର୍ଶିତା ଦେଖାଇବ ବୋଲି ତୁମେ କିମିତି ଆଶା କରୁଛ? ଭାରତର ରାଷ୍ଟ୍ରପତିଙ୍କୁ ଆମେ କ'ଣ କହିବା? ଆଜି ରାତିରେ ନୃତ୍ୟ କାର୍ଯ୍ୟକ୍ରମ ହେଇ ପାରିବନି? ବିଦେଶର ଯେତେ ସବୁ ରାଷ୍ଟ୍ରଦୂତ ଆସିଛନ୍ତି ସେମାନଙ୍କୁ ଘରକୁ ଫେରି ଯିବାକୁ କୁହନ୍ତୁ? ମୋ ଜୀବନରେ ଅନେକ ସମସ୍ୟା ଦେଖିଛି...

ଜୟରାଜ : ଏବେ କିଛି ଆଉ କୁହନି...

ରତ୍ନା : ସମସ୍ୟା କ'ଣ ତୁମେ ଜାଣ, ହେଲେ ଖୁବ୍ ଆରାମ୍‌ରେ ଭୁଲିଯାଅ!

ଜୟରାଜ : ରତ୍ନା, ନା...

ରତ୍ନା : ରାତାରାତି ମୋ ଝିଅର କ୍ୟାରିଅର୍ ଶେଷ ହେଇଯିବ, ଏମିତିକା ଅବସ୍ଥା ମୁଁ ଦେଖି ପାରିବିନି।

ଜୟରାଜ : ଏଇଟା ତା' ନୁହେଁ...

ରତ୍ନା : ଖତମ୍! ଠିକ୍ ମୋ ଭଳି। ହଁ, ତୁମ ବାପା ଠକ୍ କହୁଥିଲେ। ନାଚ ଆମକୁ କୁଆଡ଼କୁ ନେଇ ପାରିଲାନି। ତାଙ୍କ ଅଭିଶାପ ଆମ ଉପରେ ପଡ଼ିଛି। ଯା'ଠୁଁ ଆଉ କିଛି ଅଧିକ ନୁହେଁ। ଓଃ, ଏ ସବୁ ଏତେ ...

ମୂଲ୍ୟହୀନ। ତୁମେ ତୁମ ବାପାଙ୍କ କଥା ଶୁଣିବାର ଥିଲା। ସେ ଠିକ୍ ଥିଲେ। ଆମେ କିଛି ବିରାଟ ହେଇ ପାରିଲେନି କି ହେଇ ପାରିବାନି, କିଛି ଆମ ଝିଅ ବି କିଛି ହେଇ ପାରିବନି କେବଳ ଗୋଟେ ସାଧାରଣ ମଣିଷ ଛଡ଼ା।

ଜୟରାଜ : ଲତା ସାଧାରଣ ନୁହଁ !

ରତ୍ନା : ଯଦି ସେ ନାଚି ପାରିବନି, କ'ଣ ହବ ସେ ଆଉ ?

ଜୟରାଜ : ସମୟ ଥିଲା, ଯେତେବେଳେ ଆମେ ବି ନାଚୁ ନ ଥିଲେ।

ରତ୍ନା : ଆଉ ଦେଖ, ଆମେ ଏବେ କେଉଁଠି।

ଜୟରାଜ : ଆମେ ତ ଭଲ ଅଛୁ। ଅନ୍ତତଃ ମୁଁ।

ରତ୍ନା : ତୁମେ ! ଆରେ ତୁମେ ତ କିଛି ନୁହଁ, କେବଳ ଗୋଟେ ମେରୁଦଣ୍ଡହୀନ ପିଲା ଯିଏ ତା' ବାପାଙ୍କ ଘରଠୁ କେବେ ବି ଅଠଚାଳିଶ ଘଣ୍ଟାରୁ ଅଧିକ ବାହାରେ ରହି ନାହିଁ।

ଜୟରାଜ : ରତ୍ନା ! ନା...

ରତ୍ନା : ଯୋଉଦିନ ତୁମେ ଏ ଘରକୁ ଫେରି ଆସିଲ ସେଦିନଠୁ ତୁମେ ମୋ ପାଇଁ ଜଣେ ପୁରୁଷ ନୁହଁ ବୋଲି ମୁଁ ଧରି ନେଇଛି...

ଜୟରାଜ : ଅଠଚାଳିଶ ବର୍ଷ ହେଲାଣି ତମେ ସେଇ ଗୋଟେ କଥାକୁ ଗଣ୍ଠି କରି ବସିଛ ମୋ ବିରୁଦ୍ଧରେ...।

ରତ୍ନା : ତୁମେ ଠିକ୍ କହିଛ। ମୁଁ ଫାଲ୍‌ତୁରେ ବ୍ୟସ୍ତ ହେଉଛି, କାରଣ ଆମେ ହିଁ ଫାଲ୍‌ତୁ ହେଇ ଯାଇଛେ।

ଜୟରାଜ : (ଧୀର ସ୍ୱରରେ) ତୁମେ ପାଗଳ ହେଇଯିବ।

ଲତା : (ରତ୍ନା ପାଖକୁ ଯାଇ) ମାମା, ଯାହା ବି ଘଟି ଯାଉ ଏଥର ଉତ୍ସବରେ ମୁଁ ନାଚିବାକୁ ଯାଉଛି। ସେ ସବୁ ଲୋକଙ୍କ ପାଇଁ ଆଉ ତୁମ ପାଇଁ ବି।

ଜୟରାଜ : ଗୋଟେ ମୃଦଙ୍ଗବାଦକ ଖୋଜି ଦେଲେ ମୁଁ ପୁରୁଷ ହେଇଯିବି ?

ଲତା : ପାପା। (ରତ୍ନା ବେଡ୍‌ରୁମ୍‌କୁ ଚାଲିଯାଏ)

ବିଶ୍ୱାସ : ମୋ'ର ଏବେ ଚାଲିଯିବା ଉଚିତ ହବ।

ଲତା : ହଁ। ତମେ ଚାଲିଯିବା ଉଚିତ।

ବିଶ୍ୱାସ : ପରେ କେବେ ମୁଁ ଆସିବି (ଯିବା ଲାଗି ଦ୍ୱାର ଆଡ଼େ ମୁହାଁଏ)

ଲତା : ଯଦି ତୁମେ ଚାହଁ।

ବିଶ୍ୱାସ : (ଜୟରାଜ ପ୍ରତି) – ଶୁଭରାତ୍ରୀ ମହାଶୟ।

ଜୟରାଜ : ଅପେକ୍ଷା କର, ଯାଅ ନାହିଁ।

ଲତା : ପାପା, ଅନେକ ସମୟ ଯାଏ ଆମେ ତାଙ୍କୁ ହତୋତ୍ସାହ କରି ସାରିଛୁ।

ଜୟରାଜ : ଦୟାକରି ଅଳ୍ପ ସମୟ ପାଇଁ ରୁହ। (ଟିକିଏ ଅଟକି ଯାଇ)

ବିଶ୍ୱାସ : ଠିକ୍ ଅଛି ତେବେ।

ଜୟରାଜ : ବସ। (ବିଶ୍ୱାସ ବସିପଡ଼େ) ବର୍ଣ୍ଣଭିଟା ପିଅ।

ବିଶ୍ୱାସ : ମୋର ଦରକାର ନାହିଁ। ଏ ସବୁକୁ ମୁଁ ଘୃଣା କରେ।

ଜୟରାଜ : ନେଇ ଯା' ଲତା।

ଲତା : (ଟ୍ରେ ଉଠାଇ ନିଏ) ତୁମେ କଫି ପିଇଲନି ପାପା।

ଜୟରାଜ : ମୋର ଏସବୁ ଦରକାର ନାହିଁ। କଫିକୁ ମୁଁ ଘୃଣା କରେ। (ଲତା ଜୟରାଜ ଆଡ଼େ ଚାହିଁ ରହେ) ମୁଁ ସବୁ ବେଳେ ଚାହେଁ (ଲତା ଚାଲିଯାଏ, ଜୟରାଜ ବିଶ୍ୱାସ ଆଡ଼େ ଚାହେଁ) ମୁଁ ଦୁଃଖିତ। ଯା'ଠାରୁ ଟିକେ ଅଧିକ ଆମେ ଆମ ଅତିଥିଙ୍କୁ ସତ୍କାର କରିଥାଉ। ଆମକୁ କ୍ଷମା କରିବ।

ବିଶ୍ୱାସ : ମୁଁ ବୁଝି ପାରୁଛି।

ଜୟରାଜ : ସତରେ ?

ବିଶ୍ୱାସ : ହଁ

ଜୟରାଜ : କ'ଣ ତା'ହେଲେ ବୁଝୁଛ ?

ବିଶ୍ୱାସ : ଆପଣ ଲତା· ନୃତ୍ୟ କାର୍ଯ୍ୟକ୍ରମ ପାଇଁ ଏତେ ବ୍ୟସ୍ତ, ତେଣୁ ମୋ ପ୍ରତି ବିଶେଷ ଧ୍ୟାନ ଦେଇ ପାରିଲେନି।

ଜୟରାଜ : ଏଇଟା କେବଳ ନୃତ୍ୟ କାର୍ଯ୍ୟକ୍ରମ ନୁହେଁ।

ବିଶ୍ୱାସ : ତା'ହେଲେ କ'ଣ ଏଇଟା ? (ଟିକିଏ ରହି)

ଜୟରାଜ : ତୁମେ ପିଆପିଇ କର ?

ବିଶ୍ୱାସ : ମାନେ ହଁ, ନା, କେବେ କେବେ ବଂଧୁମାନଙ୍କ ସହ। ହେଲେ ବଡ଼ମାନଙ୍କ ସାମ୍ନାରେ କେବେ ବି ନୁହଁ।

(ଜୟରାଜ କପ୍‌ବୋର୍ଡ଼ ପାଖକୁ ଯାଏ ଏବଂ କପ୍‌ବୋର୍ଡ଼ ଖୋଲୁ ଖୋଲୁ ଲତା ପଶି ଆସେ। ଚଟାପଟ ସେ ବଂଦ୍ କରିଦିଏ କପ୍‌ବୋର୍ଡ଼କୁ)

ଲତା : (ବିଶ୍ୱାସ ପ୍ରତି) ମୁଁ ବହୁତ ଦୁଃଖିତ। ମତେ ଲାଗୁଛି ଆଜି ଦିନଟା ହିଁ ଖରାପ ଦିନ ଥିଲା...

ଜୟରାଜ : ଠିକ୍ । ମୁଁ ତୋ ବଂଧୁଙ୍କୁ କ୍ଷମା ମାଗି ସାରିଲିଣି।

ଲତା : ଭଲ କଲ। ତା'ହେଲେ ସେ ଆଜି ଯା'ନ୍ତୁ, ପୁଣି ପରେ କେବେ ଆସିବେ ଏବଂ...

ଜୟରାଜ : ଲତା, ତୁ ତୋ ମା' ପାଖକୁ ଯା' ଆଉ ଆଜି ତା' ପାଖରେ ଶୁଅ।

ଲତା : ତା'ର ମୁଣ୍ଡଟା ଆଜି କିମିତି ଗୋଟେ ପ୍ରକାରର ହେଇ ଯାଇଛି। ଆଉ ତୁମେ ଜାଣ କ'ଣ ସେ କରିବସେ।

ଜୟରାଜ : ମୁଁ ତ ଜାଣିଛି। ସେଇଥିପାଇଁ ତ ମୁଁ ଆଜି ତୋ ରୁମ୍‌ରେ ଶୋଇବି।

ଲତା : ତା' ଜୀବନର ଯାବତୀୟ ଦୁଃଖ କାହାଣୀ ସେ ବଖାଣିବ। ସାରା ରାତି ଏ ସବୁ ମୁଁ ଶୁଣିବାକୁ ଚାହେଁନା।

ଜୟରାଜ : ତୁ ତ କେବଳ ଏ ସବୁ ଶୁଣିବୁ। ମୁଁ ତ ସେସବୁ ସହ ବଂଚିଛି।

ଲତା : ଓଃ (ଦାନ୍ତ କାମୁଡ଼େ ମନେ ମନେ) ଏଇଟା ମୁଁ ଜମା କରି ପାରିବିନି କେବେ, ନିଜ ହାରି ଯିବା କାହାଣୀ ସବୁ ମୋ ଛୁଆମାନଙ୍କୁ କହି ନିରାଶ କରିବିନି। (ବେଡ଼ରୁମ୍ ଆଡ଼କୁ ଚାଲିଯାଏ)।

(ଜୟରାଜ କପ୍‌ବୋର୍ଡ୍ ପାଖକୁ ଯାଏ ତା' ଭିତରୁ ଗୋଟେ ହ୍ୱିସ୍କି ବୋତଲ କାଢ଼େ ଏବଂ ଗୋଟେ ଗ୍ଲାସ୍ ବି। ଗ୍ଲାସ୍‌ରେ ମଦ ଢ଼ାଳେ....)

ବିଶ୍ୱାସ : ବେଶି ନୁହଁ ; ମୋ ପାଇଁ ବାସ୍, ଅଳ୍ପ....

ଜୟରାଜ : ସୋଢ଼ା ?

ବିଶ୍ୱାସ : ଠିକ୍ ଅଛି...

ଜୟରାଜ : ବଢ଼ିଆ, ଆମ ପାଖରେ ଗୋଟେ ବି ନାହିଁ। ବିନା ସୋଢ଼ାରେ ପିଅ। ବରଫ କଥା ବି ପଚାରନି। ମୁଁ ସେଇଟା ବି ତୁମକୁ ଦେଇ ପାରବିନି। (ବିଶ୍ୱାସ ହାତକୁ ଗ୍ଲାସ୍ ବଢ଼ାଏ)

ବିଶ୍ୱାସ : ଆପଣଙ୍କର ?

ଜୟରାଜ : ସିଧା ବୋତଲରୁ। ଚିଅର୍ସ। (ସେମାନେ ପିଅନ୍ତି) ମୋ'ର ପ୍ରକୃତରେ ପିଇବା କଥା ନୁହଁ।

ବିଶ୍ୱସ : ତା' ହେଲେ ସେଇଥିପାଇଁ ଆପଣ ବୋତଲଟାକୁ କପ୍‌ବୋର୍ଡ଼ ଭିତରେ ଲୁଚେଇକି ରଖିଛନ୍ତି ?

ଜୟରାଜ : ଚୁପ୍ ରହ ଆଉ ପିଅ। (ବିଶ୍ୱାସ ଓ ଜୟରାଜ ନୀରବରେ ପିଇ ଚାଲିଥାନ୍ତି)

ବିଶ୍ୱାସ : କ'ଣ ପାଇଁ ଆପଣ ଏତେ ବ୍ୟସ୍ତ ସେ କଥା ମୋତେ ଆଜି କହିବେ।

ଜୟରାଜ : ମୁଁ ବ୍ୟସ୍ତ ହେବା ପରି ଲାଗୁଛି ?

ବିଶ୍ୱାସ : ହଁ। ଲାଗିଲା, ସେଇଥିପାଇଁ ଅଟକିବାକୁ କହିଲେ ମତେ।

ଜୟରାଜ : ଓ ! ବ୍ୟସ୍ତତା ମୋତେ କେବେ ବି ବ୍ୟସ୍ତ କରିପାରେନା।

ବିଶ୍ୱାସ : ନୁହଁ ତା'ହେଲେ ? ତେବେ କ'ଣ ଏଇଟା ?

ଜୟରାଜ : (ନିଜ ପ୍ରତି) ଠାଏ ଅଟକି ଯିବା। ଏବଂ ପଛକୁ ଫେରି ଚାହିଁବା। ଏବଂ ବହୁତ ଦୂରକୁ ତୁମେ ଯାଇ ନାହଁ ବୋଲି- ଦେଖି ପାରିବା। ଏବଂ ବେଶି ଦୂରକୁ ଯାଇ ବି ପାରିବନି।

ବିଶ୍ୱାସ : ଫୁ... ଉ !

ଜୟରାଜ : ତୁମ ଜୀବନ ସଂପର୍କରେ କିଛି କୁହ।

ବିଶ୍ୱାସ : ମୋ ଜୀବନ ? ବେଶି କିଛି କହିବାକୁ ନାହିଁ। ସେଇଟା ତ ଏଯାଏ ଆରମ୍ଭ ବି ହେଇନି।

ଜୟରାଜ : ଆରମ୍ଭ ହେଇନି ଏଯାକେ ! ତୁମେ ଷାଠିଏ ବର୍ଷ ଯାଏ ଅପେକ୍ଷା କର ତଥାପି ସେଇଟା ଆରମ୍ଭ ହେଇ ପାରିବନି। (ପିଉ ପିଉ) ତା' ହେଲେ ତୁମ ବାପା ଜଣେ ପାନ ଦୋକାନୀ।

ବିଶ୍ୱାସ : ମିଠା ଦୋକାନୀ।

ଜୟରାଜ : ବହୁତ ଟଙ୍କା କମାଉଥିବେ ?

ବିଶ୍ୱାସ : ଏଇଟା ଆମ ପାରିବାରିକ ବ୍ୟବସାୟ। ଠିକ୍ ଅଛି। କୋଠାମାନଙ୍କରୁ ମୋ ବାପା ବେଶ୍ ଭଲ ଟଙ୍କା ରୋଜଗାର କରିଛନ୍ତି।

ଜୟରାଜ : ହୁଁ। କଳାଧନ।

ବିଶ୍ୱାସ : ଏକଦମ୍ ହାଣ୍ଡି କଳା।

ଜୟରାଜ : କୋଠାବାଡ଼ି। ଏଇୟା କହିଲ ନା ?

ବିଶ୍ୱାସ : ହଁ।

ଜୟରାଜ : ଆଶ୍ଚର୍ଯ୍ୟ।

ବିଶ୍ୱାସ : କ'ଣ ?

ଜୟରାଜ : ଠିକ୍ ସେଇ ଏକ ପ୍ରକାରେ ମୋ ବାପା ବି ଟଙ୍କା କମେଇଥିଲେ।

ବିଶ୍ୱାସ : କୋଠାବାଡ଼ି ?

ଜୟରାଜ : ଘର, ବଂଗଳାମାନ। ଏକଦମ୍ ଶସ୍ତାରେ କିଣୁଥିଲେ। ଯେତେବେଳେ ବ୍ରିଟିଶ ଲୋକେ ଦେଶ ଛାଡ଼ି ଚାଲିଗଲେ, ସେତେବେଳେ ଏଇ ଘର ଆଉ ବଂଗଳା ସବୁର ଚାହିଦା ବଢ଼ିଗଲା। ସେ ବହୁତ ଟଙ୍କା କମେଇଲେ। ସବୁଠୁ ଧନୀ ଲୋକ ଥିଲେ ଏ ସହରରେ। ଅମ୍ରିତ୍‌ଲାଲ୍ ପାରିଖ। ସହରର ଶେଠ୍‌ଜୀ। ଜାଣିଛ, ଏ ସବୁ ଟଙ୍କା ନେଇ କ'ଣ କଲେ ସେ ? ଭାରତ ନିର୍ମାଣରେ ସେ ସବୁ ଟଙ୍କା ଖର୍ଚ୍ଚ କରିଦେଲେ। ବଡ଼ ଦେଶପ୍ରେମୀ ଶୁଣା ଯାଉନି କଥାଟା ? ବଂଧୁ ବାଂଧବ,

ସଂପର୍କୀୟମାନଙ୍କୁ କରଜ ଦେଲେ ଟଙ୍କାଗୁଡ଼ାକ। ଏଇଆ ଥିଲେ ମୋ ବାପା- ବିଚରା ସରଳ ବିଶ୍ୱାସୀ !

ବିଶ୍ୱାସ : ମୁଁ ଚାହିଁଲେ ବି ମୋ ବାପା ମୋତେ ଧାର୍ ଦେବେନି।

ଜୟରାଜ : (ଖୁବ୍ ଜୋର୍‌ରେ ହସିବା) ମୋ ବାପା ବି ଦେଇ ନ ଥାନ୍ତେ। ସେ ସମସ୍ତଙ୍କୁ ଉଧାର ଦେଲେ କେବଳ ମତେ ଛାଡ଼ି।

ବିଶ୍ୱାସ : କାହିଁକି ?

ଜୟରାଜ : (ପିଉ ପିଉ) ବେଶ୍ୟାର ଅସଲ କଳା ହେଲା ସବୁ ଲୁଗା ଖୋଲି ପକାଇବା, ଏ ସବୁ କଳା ଜଣେ ମଣିଷ ଜାଣି କ'ଣ କରିବ ? କୋଉ କାମରେ ତା'ର ଏଇ କଳାଟା ଲାଗିବ ? କୋଉ କାମରେ ନୁହେଁ। ତେଣୁ କୋଉ ଲୋକ ବି ଏ କଳାଟାକୁ ଶିଖିବନି। ତେଣୁ ଯିଏ ଏ କଳାକୁ ଆୟତ୍ତ କରିବ ସେ କେବେ ମଣିଷ ହେଇ ପାରିବନି। ଏପରି ଏକ ଯଥାର୍ଥତା ବିରୁଦ୍ଧରେ ମୁଁ ଯୁକ୍ତି କରିବି କିମିତି ?

ବିଶ୍ୱାସ : ହେଲେ ଆପଣ ତା' ବିରୁଦ୍ଧରେ ସ୍ୱର ଉଠେଇ ଥିଲେ। ଭଲ କଥା। ଆପଣ ଯାହା ଚାହିଁଲେ, ତାହା ହିଁ କରି ଦେଖେଇଲେ। ଆପଣ ଦୃଢ଼ମନା ଥିଲେ।

ଜୟରାଜ : (ତାଚ୍ଛଲ୍ୟ ସ୍ୱରରେ) ସାହସୀ।

ବିଶ୍ୱାସ : ହଁ। ସାହସୀ ବି।

ଜୟରାଜ : କେବଳ ଶବ୍ଦ ! ବଡ଼ ବଡ଼ ଶବ୍ଦ। ବାସ୍ ସେତିକି।

ବିଶ୍ୱାସ : କ'ଣ ହେଲା ?

ଜୟରାଜ : କ'ଣ ହେଲା ? କିଛି ନାହିଁ। (ହସିବା) ସେଇଟା ହିଁ ଅସୁବିଧା। (ପୁଣି ହସିବା) ମୋ ସ୍ତ୍ରୀକୁ ଏବେ ଶୁଣିଲନି ? ଆମେ କିଛି ବି ନୋହୁଁ ! ଚାଳିଶି ବର୍ଷ ପରେ ବି ସେ ମୋତେ କହୁଛି- ମୋତେ ଗୋଟେ ମଣିଷ ବୋଲି ଭାବୁନି ସେ। ମେରୁଦଣ୍ଡହୀନ ଗୋଟେ ପିଲା। ଆଉ ଜାଣିଛ, ମୁଁ କ'ଣ ଭାବୁଛି ? ମୁଁ ଭାବୁଛି ସେ ଠିକ୍ କଥା କହୁଛି !

ବିଶ୍ୱାସ : କାହିଁକି ?

ଜୟରାଜ : ସେ ଜାଣିଛି, କାହିଁକି ?

ବିଶ୍ୱାସ : ଆପଣ ନିଶ୍ଚୟ ଆପଣଙ୍କ ବାପାଙ୍କୁ ଘୃଣା କରୁଥିବେ ।

ଜୟରାଜ : ହେଇପାରେ ।

ବିଶ୍ୱାସ : ଲତା କହୁଥିଲା ଆପଣ ତାଙ୍କୁ ବହୁତ ସମ୍ମାନ କରୁଥିଲେ ବୋଲି ।

ଜୟରାଜ : ଏ କଥା କହିଲା ସେ ?

ବିଶ୍ୱାସ : ହଁ । ସେଇଥିପାଇଁ ଏତକ ଜାଗା ଆପଣ ଅପରିବର୍ତ୍ତିତ ରଖିଛନ୍ତି, ଠିକ୍ ଯିମିତି ଗୋଟେ ଧର୍ମ ପୀଠ, ତାଙ୍କର ସ୍ମୃତିରେ ।

ଜୟରାଜ : ବାଜେ କଥା । ଏଇଟା ଥିଲା ମୋ ପୃଥିବୀ । ସେଇଥି ପାଇଁ ମୁଁ ଏ ଜାଗାକୁ ଯିମିତି ଥିଲା, ସେମିତି ରଖିଛି । ଏଇ ଜାଗାରେ ମୁଁ ମୋ ପିଲାଦିନ କଟାଇଛି । ମୁଁ ତାଙ୍କ ସ୍ମୃତି ସବୁ ହଟେଇ ଦେଇଛି । ବଗିଚା ସବୁ । ତାଙ୍କ ପାଖରେ ଅପର୍ଯ୍ୟାପ୍ତ ସମୟ ଥିଲା । ବହୁତ ବଗିଚା ପ୍ରିୟ ଥିଲେ ସେ । ଗୋଟେ ଗୋଲାପ ବଗିଚା । ଲତାମାନଙ୍କୁ ସବୁ କାନ୍ଥରେ ଚଢ଼ାଉ ଥିଲେ । ଯେବେ ସେ ମରିଗଲେ, ସବୁ ସ୍ମୃତି ତାଙ୍କର ହଟେଇ ଦେଲି ମୁଁ । ଏକଦମ୍ ଚେର ଉପାଡ଼ି ଦେଲି । ଯେତେବେଳେ ରତ୍ନା ଆଉ ମୁଁ ଆମ ଡ୍ୟାନ୍ସ ସ୍କୁଲ୍‌ରୁ ଆଉ ବିଦେଶ ଯାତ୍ରାରୁ କିଛି ପଇସା ଏକାଠି କଲୁ, ଘର ସାମ୍ନାଟାକୁ ବଢ଼େଇଲୁ । ଅନେକ ଲୋକ ଆମ ଘରକୁ ଆସୁଥିଲେ, ଦେଖ, ଆମେ ଯେବେ ବିଦେଶରେ ନାଁ କମେଇଲୁ, ଆମ ନିଜ ଜାଗାରେ ଆମେ ସେଲିବ୍ରିଟି ପାଲଟି ଗଲୁ ।

ବିଶ୍ୱାସ : ଆଉ ଏ ଶାଲ ? ତାଙ୍କର ଏ ଶାଲ କାହିଁକି ରଖିଛନ୍ତି ଆପଣ ? (କିଛି ଉତ୍ତର ନାହିଁ) ଏଇଟା ଖୁବ୍ ସୁନ୍ଦର ଶାଲ ହେଇଛି । ମୁଁ ଲତାକୁ କହିଲି ଏଇଟା ମୋତେ ଯୌତୁକ ଦେବାକୁ । ଆରେ ଜୋକ୍ କରୁଥିଲି, ଆପଣ ବୁଝିପାରୁଥିବେ । ସତ କହୁଛି ମୋର କିଛି ଦରକାର ନାହିଁ । ସେ ହିଁ କହିଲା, ଏଇଟା ଆପଣଙ୍କ ମୂର୍ଚ୍ଛି ପାରିବେନି, କାରଣ ଏଇଟା ଆପଣଙ୍କ ବାପାଙ୍କର ।

(ଜୟରାଜ କପ୍‌ବୋର୍ଡ଼ ପାଖକୁ ଯା'ନ୍ତି ଓ ସେଥିରୁ ଶାଲ୍ ବାହାର କରନ୍ତି ଏବଂ ବିଶ୍ୱାସକୁ ଦିଅନ୍ତି ।)

ଜୟରାଜ : ଏଇଟାକୁ ଘୋଡ଼େଇ ହେଇ କିମିତି ଦେଖା ଯାଉଛ, ଦେଖେଁ । (ବିଶ୍ୱାସ

ଖୁବ୍ ଅସହଜ ଭାବେ ନିଜ ଶରୀରରେ ଘୋଡ଼ାଏ ଶାଲ୍‌ଟିକୁ ।)

ବିଶ୍ୱାସ : ଖୁବ୍ ସୁନ୍ଦର ହେଇଛି ସତରେ ! ଶେରୱାନୀ ସାଂଗକୁ ଏଇଟା ବହୁତ ମାନିବ ।

ଜୟରାଜ : ତୁମକୁ ଭଲ ଲାଗୁଛି ?

ବିଶ୍ୱାସ : ଏକଦମ୍, ହଁ ।

ଜୟରାଜ : ତୁମେ ଏଇଟା ତା'ହେଲେ ନେଇପାର ।

ବିଶ୍ୱାସ : ଓ ! କିମିତି ଆପଣଙ୍କୁ ଧନ୍ୟବାଦ ଦେବି, ଜାଣିପାରୁନ । ଆପଣ ଖୁବ୍ ଉଦାର । ଖୁବ୍ ହେପାଜତରେ ରଖିବି ଯା'କୁ ପ୍ରତିଜ୍ଞା କରୁଛି । ଖୁବ୍ ଯତ୍ନରେ ଚଉତାଇ ମୁଁ ବ୍ୟାଗ୍‌ରେ ରଖିବି.....

ଜୟରାଜ : (ଶାଲ୍ ତା' ହାତରୁ ନେଇଯା'ନ୍ତି, ଚାରିଚଉତା କରି ସୋଫା ଉପରେ ଥୋଇ ଦିଅନ୍ତି ।) ମୁଁ ଏଇଟାକୁ ଏବେ ଦେବି ବୋଲି କହିନି । ଯେବେ ତୁମେ ଲତାକୁ ବାହା ହବ, ନବ ।

ବିଶ୍ୱାସ : ମୁଁ ଦୁଃଖିତ । ଭୂଲ୍ ବୁଝିଲି ମୁଁ । ହଁ, ଅବଶ୍ୟ । (ତାଙ୍କ ହାତକୁ ଟାଣି ନେଇ କରମର୍ଦ୍ଦନ କରେ ଖୁବ୍ ଜୋର୍‌ରେ) ଧନ୍ୟବାଦ୍, ସାର୍ । ଅନେକ ଅନେକ ଧନ୍ୟବାଦ୍ !

ଜୟରାଜ : (ବିଶ୍ୱାସ ହାତ ମୁଠାରୁ ନିଜ ହାତ ମୁକୁଳାନ୍ତି) । ଏଇଟା କେବଳ ଗୋଟେ ଶାଲ୍ । ଅନେକ ପିଲା ଅଛନ୍ତି ଯିଏ ମାରୁତି କାର୍ ମାଗିଥା'ନ୍ତେ ।

ବିଶ୍ୱାସ : ନା, ମୁଁ ଆପଣଙ୍କୁ ଶାଲ୍ ପାଇଁ ଧନ୍ୟବାଦ ଦେଉନି, ଧନ୍ୟବାଦ ଏଇଥି ପାଇଁ ଦେଉଛି ଯେ ଆପଣ ଆମ ବାହାଘର ପାଇଁ ରାଜି ହେଇଛନ୍ତି । ଆପଣ ମୋତେ ପସନ୍ଦ କରିଛନ୍ତି ।

ଜୟରାଜ : ମୁଁ ତୁମକୁ ପସନ୍ଦ କରିଛି ?

ବିଶ୍ୱାସ : ଆଜ୍ଞା !

ଜୟରାଜ : ଆଉ ତୁମେ ଆମକୁ ପସନ୍ଦ କରିଛ ?

ବିଶ୍ୱାସ : ଆଜ୍ଞା !

ଜୟରାଜ : ଭଲ କଥା। ତା'ହେଲେ ଏବେ ଘରକୁ ଯାଅ। ଆଉ ବାପାଙ୍କୁ କୁହ, ସୁବିଧା ଦେଖି ମୋ ସହ କଥା ହେବେ।

ବିଶ୍ୱାସ : ନିଶ୍ଚୟ ଆଜ୍ଞା। ନିଶ୍ଚୟ। (ଡ୍ରଇଂରୁମ୍ ଦ୍ୱାର ଆଡ଼କୁ ଯାଏ।) ଲତା ଗୋଟେ କଥା ଠିକ୍ କହୁଥିଲା। ଆପଣ ଅନ୍ୟମାନଙ୍କଠାରୁ ଟିକେ ଭିନ୍ନ। (ପ୍ରସ୍ଥାନ) (ଜୟରାଜ ମୁଚ୍‌କି ମୁଚ୍‌କି ହସନ୍ତି। ସେ ବିଶ୍ୱାସର ଗ୍ଲାସ ଟେକି ଧରନ୍ତି, ସେଥିରେ ଥିବା ବାକି ମଦ ପିଅନ୍ତି ଏବଂ ଗ୍ଲାସ୍‌କୁ କପ୍‌ବୋର୍ଡ଼ରେ ରଖି ଦିଅନ୍ତି। ନିଜ ପାଇଁ ଥିବା ମଦ ବୋତଲରୁ ଗୋଟେ ଢ଼ୋକ ନିଅନ୍ତି ଏବଂ କପ୍‌ବୋର୍ଡ଼ ଭିତରେ ରଖନ୍ତି। ଶାଲ୍‌କୁ ଉଠାଇବା ଆଗରୁ ଚାହିଁ ରହନ୍ତି।)

ରତ୍ନା : (ପ୍ରବେଶ) ଜୟରାଜ? ପଳେଇଲାଣି କି ସେ?

ଜୟରାଜ : ହଁ। ତୁମକୁ ଏବେ କିମିତି ଲାଗୁଛି?

ରତ୍ନା : ଓଃ ସାଂଘାତିକ ଖରାପ।

ଜୟରାଜ : ଲତା କାହିଁ?

ରତ୍ନା : ହଠାତ୍ ଯାଇ ଶୋଇଲାଣି ଆମ ବେଡ଼୍‌ରେ ନିଘୋଡ଼ ନିଦରେ। ଆଶ୍ଚର୍ଯ୍ୟ ଲାଗୁଚି, ଏମିତି କଲା କାହିଁକି ସେ?

ଜୟରାଜ : ହଁ। ଆଶ୍ଚର୍ଯ୍ୟ ଲାଗୁଛି। କ'ଣ ପାଇଁ?

ରତ୍ନା : ଛଳନା କରନା। ମୋତେ ସାନ୍ତ୍ୱନା ଦେବା ଲାଗି ତାକୁ କହିଥିଲ। କହିଥିଲ ନା ନାହିଁ?

ଜୟରାଜ : ତମେ ସାନ୍ତ୍ୱନା ପାଇଲ?

ରତ୍ନା : ସେ କଥାରେ କିଛି ଯାଏ ଆସେନା, ତା' ରୁମ୍‌ରେ ତୁମେ ଆଜି ଶୋଇବ।

ଜୟରାଜ : ଚଳେଇନେବି ମୁଁ। (ହେକ୍କା ମାରିବା)

ରତ୍ନା : (ଛିଙ୍କିବା) ତୁମେ ମଦ ପିଉଥିଲ। ପିଉଥିଲ ନା?

ଜୟରାଜ : ଖୁବ୍ ଅଳ୍ପ। ସେ ପିଲାଟା ଖୁବ୍ ଦରକାର କରୁଥିଲା। ମୁଁ ତା' ସାଥି ଦେଇଥିଲି।

ରତ୍ନା : ମୁଁ ତୁମକୁ ବିଶ୍ୱାସ କରେନା। ବହୁତ ପିଇଛ ତୁମେ। ତୁମକୁ ଦେଖି ଦେଲେ ମୁଁ କହି ଦେଇପାରିବି।

ଜୟରାଜ : ହେଇପାରେ।

ରତ୍ନା : ମଦ କୋଉଠୁ ପାଇଲ ତମେ ? କେବେ ବି ଘରେ ମଦ ରହିବନି ଏ କଥା ଲତା ତ ନିଶ୍ଚିତ କରିଥିଲା।

ଜୟରାଜ : ଏବେ ତୁମେ ଛଳନା କରୁଛ।

ରତ୍ନା : କ'ଣ କହିବାକୁ ଚାହଁ ତମେ ?

ଜୟରାଜ : ତୁମେ ଜାଣିଛ, ମୁଁ ଏଇଟାକୁ କପବୋର୍ଡ଼ ଭିତରେ ଲୁଚେଇକି ରଖେ।

ରତ୍ନା : ଯଦି ମୁଁ ଜାଣିଥାନ୍ତି, ତେବେ ସେଠୁ ନେଇ ଯାଇଥା'ନ୍ତି ବୋତଲଟା।

ଜୟରାଜ : ତୁମେ ନେଇ ଯାଇଥିଲ। ଆଣି ପୁଣି ସେଇ ଜାଗାରେ ରଖିଦେଲା। ସେଥିରେ ପାଣି ମିଶାଇଲା ପରେ।

ରତ୍ନା : ତୁମେ ବହୁତ ପିଇଛ।

ଜୟରାଜ : ପରେ ତମେ ଯେବେ ପିଇବାକୁ ଇଚ୍ଛା କରିବ, ସେଥିରେ ଆଉ ପାଣି ମିଶାଇବାକୁ ପଡ଼ିବନି। ପ୍ରତିଥର ତୁମକୁ ଅଧିକରୁ ଅଧିକ ପିଇବାକୁ ହବ ସେଇ ଏକା ରକମ ନିଶା ହବା ପାଇଁ।

ରତ୍ନା : ମୋ'ର ତୁମ ଭଳିଆ ନିଶାସକ୍ତ ହବା ଦରକାର ନାହିଁ। କେବେ କିମିତି ଛୋଟ ପେଗ୍‌ଟାଏ ଦରକାର ସ୍ନାୟୁମାନଙ୍କୁ ସ୍ଥିର ରଖିବା ପାଇଁ।

ଜୟରାଜ : ବସ।

ରତ୍ନା : କାହିଁକି ?

ଜୟରାଜ : (ରତ୍ନାକୁ ନେଇ ବସାଇବା) ବସି ପଡ଼ନ୍ତୁ ରତ୍ନା ଦେବୀ... ତୁମ ପାଇଁ ଗୋଟେ ଛୋଟ ପେଗ୍ ତିଆରି କରୁଛି। (କପ୍‌ବୋର୍ଡ଼ ପାଖକୁ ଯାଏ)

ରତ୍ନା : ପ୍ଲିଜ୍ ଜୟ। ଆଜି ମଜାକ୍ କରିବାର ମୁଡ୍ ଆଦୌ ମୋ'ର ନାହିଁ।

ଜୟରାଜ : ଜୟ ? ତୁମେ ମୋତେ 'ଜୟ' ଡାକିଲ ? (ବୋତଲ ବାହାରକୁ ଆଣନ୍ତି ଏବଂ ଖୋଲନ୍ତି) ଭଗବାନ ଜାଣନ୍ତି କେତେବର୍ଷ ପରେ ତୁମେ ମୋତେ

'ଜୟ' କହି ଡାକୁଚ। ଏଇଟା ପାଇଁ ଗୋଟେ ସେଲିବ୍ରେସନ୍ କରିବାକୁ ପଡ଼ିବ। ଏଇଠି। (ରତ୍ନାକୁ ବୋତଲ ବଢ଼ାଏ)

ରତ୍ନା : ମୁଁ ସବୁବେଳେ ଗ୍ଲାସ୍ ବ୍ୟବହାର କରେ।

ଜୟରାଜ : (ଗ୍ଲାସ୍ ଆଣିବା ପାଇଁ କପ୍‌ବୋର୍ଡ଼ ପାଖକୁ ଯାଏ) ଖୁବ୍ ବଢ଼ିଆ। ଅନେକ ଦିନ ହେଲାଣି ଆମେ ପରସ୍ପର ସହ ମନ ଖୋଲା କଥା ବି ହେଇନେ। ହେଇପାରେ ବେଳେବେଳେ ଆମକୁ ସାଂଗ ହେଇ ପିଇବାକୁ ପଡ଼ିବ। (ମଦ ଢ଼ାଳନ୍ତି)। ଅନ୍ତତଃ ଆମେ ପରସ୍ପର ପ୍ରତି ଟିକେ ଅଧିକ ସାଧୁତା ଆଚରଣ କରିପାରିବା।

ରତ୍ନା : (ମଦ ପିଉପିଉ) ମୁଁ ତୁମ ପ୍ରତି କେବେ ଅସାଧୁ ଥିଲି କି? (ବଡ଼ ଢୋକଟାଏ ନିଅନ୍ତି)

ଜୟରାଜ : ଦେଖ, ମୁଁ ପାଣି ମିଶାଇବା କଥା କହୁଥିଲି ନା? ଆଉ ଟିକେ ନବ? (ରତ୍ନା ମୁଣ୍ଡ ହଲାନ୍ତି) ଟିକେ ଭଲ ଲାଗୁଛି ଏଇନେ? (ରତ୍ନା ମୁଣ୍ଡ ଟୁଙ୍ଗାରନ୍ତି।) ବଢ଼ିଆ। ତା'ହେଲେ ଆମେ ଗପି ପାରିବା।

ରତ୍ନା : ହଁ। ମୁଁ ଭାବିଛି, ଆମେ ଶେଷାଦ୍ରୀକୁ ଆଣିବା ଲାଗି ଚନ୍ଦ୍ରକଳାକୁ ଅନୁରୋଧ କରିବା। ଟିକିଏ ସାହାଯ୍ୟ କରିବାକୁ। କେବେ ସେ ବି ଆମ ସାହାଯ୍ୟ ଲୋଡ଼ିପାରେ। ସେ ନିଶ୍ଚିତ ଆମ କଥା ରଖିବ।

ଜୟରା : ଠିକ୍ ଭାବିଛ।

ରତ୍ନା : ତା'ହେଲେ ଏଇଆ ସ୍ଥିର ହେଲା। ମୁଁ କାଲି ସକାଳେ ତାକୁ ଫୋନ୍ କରିବି। (ଯିବା ଲାଗି ଉଦ୍ୟତ)

ଜୟରାଜ : (ହଠାତ୍) ତୁମେ କ'ଣ ଭାବୁଚ, ଆମେ ଫେରି ଆସି ନ ଥିଲେ ଖୁସୀରେ ଥାଆନ୍ତେ?

ରତ୍ନା : (ମାନସିକସ୍ତରରେ ଅସ୍ୱସ୍ଥ ହେବା) ତୁମେ କ'ଣ ସେଇ କଥା କହୁଚ...?

ଜୟରାଜ : ହଁ।

ରତ୍ନା : ଚାଳିଶି ବର୍ଷ ପରେ ସେ କଥା ପୁଣି ଆଣୁଚ କାହିଁକି?

| | | |
|---|---|---|
| ଜୟରାଜ | : | ତୁମେ ସେ କଥା ଉଠେଇଲ। କ'ଣ କହିଲ ତୁମେ? ତୁମ ପାଇଁ ମୁଁ ଗୋଟେ ମଣିଷ ହବା ବଂଦ୍ ହେଇ ଯାଇଛି କାରଣ ଆମେ ଆମ ନିଜ ଗୋଡ଼ରେ ଠିଆ ହେଇ ପାରିଲେନି... |
| ରତ୍ନା | : | ମୁଁ ସେମିତି କହି ନ ଥିଲି । |
| ଜୟରାଜ | : | ତୁମ ମୁହଁ କହୁଚି ତୁମେ କହିଚ। |
| ରତ୍ନା | : | ରାଗିଗଲେ ମୁଁ ଯାହା ସବୁ କହେ, ତୁମେ ତାକୁ ଧରିବା ଉଚିତ ନୁହେଁ। |
| ଜୟରାଜ | : | ସେଇଟା ହଉଚି ଅସଲ ସମୟ ଯେତେବେଳେ ମୁଁ ତୁମକୁ ଚିହ୍ନିପାରେ। |
| ରତ୍ନା | : | ମୁଁ ଶୋଇବାକୁ ଚାଲିଲି। ତୁମେ ବି ଯାଅ ଶୋଇବ। |
| ଜୟରାଜ | : | କ'ଣ ଚାହୁଁଥିଲ ତୁମେ ? ତୁମ ଦାଦାଙ୍କ ଘରେ ସେମିତି ପଡ଼ି ରହିଥା'ନ୍ତି... |
| ରତ୍ନା | : | ନା କହୁଚି ! |
| ଜୟରାଜ | : | ପଡ଼ି ରହିଥାନ୍ତି ତାଙ୍କ ଘରେ ସେ ସବୁ କଥା କହିଲା ପରେ...। |
| ରତ୍ନା | : | ଦୟା କରି ତୁମେ....। |
| ଜୟରାଜ | : | ଏଇଆ ମୁଁ କହିବାକୁ ଚାହୁଁଥିଲ ତୁମେ ? |
| ରତ୍ନା | : | କୁହନା ଏକଥା ! |
| ଜୟରାଜ | : | ଅନ୍ୟ ଦୃଷ୍ଟିରେ ଦେଖିଲେ, ତୁମ ଦାଦା ଯେତେବେଳେ.... |
| ରତ୍ନା | : | ପ୍ଲିଜ୍.... |
| ଜୟରାଜ | : | ତୁମ ଦାଦା ଯେତେବେଳେ ତାଙ୍କ ସହ ଶୋଇବାକୁ ତୁମକୁ କହିଲେ ? ମୁଁ ସେତେବେଳେ ଗୋଟେ ମଣିଷ ଥିଲି କି ? ମୋ ସ୍ତ୍ରୀକୁ ତା'ଙ୍କ ନିଜ ଦାଦାଙ୍କୁ ଅର୍ପଣ କରିବା ଲାଗି କାରଣ ସେତେବେଳେ ସେ ଆମକୁ ଦୁଇଓଳି ଖାଇବା ପାଇଁ ଆଉ ମୁଣ୍ଡ ଗୁଂଜିବା ଲାଗି ଘରଟେ ଦେଇଥିଲେ ? ତୁମେ କ'ଣ ସେଇଆ କରିବାକୁ ଇଚ୍ଛା କରିଥିଲ ? ତୁମ ଦାଦା କ'ଣ ତାଙ୍କର ସବୁ ଝିଆରୀମାନଙ୍କୁ ଏଭଳି ସୁନ୍ଦର ପ୍ରସ୍ତାବ ଦେଇଥିଲେ ? ନା ! ସେଇଟା ହେଇଥାନ୍ତା ଗୋଟେ ମହା ପାପ। ମାତ୍ର ତୁମେ ଥିଲ ସମସ୍ତଙ୍କ ଠାରୁ ଭିନ୍ନ। ତୁମେ ଯିମିତି ଗଢ଼ା ହେଇଥିଲା |

କେବଳ ଆମୋଦପ୍ରମୋଦ ପାଇଁ। କେତେ ଟିକିନିକି ବିବରଣୀ ସବୁ। ହେଲେ ମୋ ବାପାଙ୍କ ପାଖକୁ ଲେଉଟି ଆସିବା କ'ଣ ଅପରାଧ ହେଇଗଲା ? ଅନ୍ତତଃ ମୋ ବାପା ତ ସେ କଥା କରି ନାହାନ୍ତି....।

ରତ୍ନା : (ଚିତ୍କାର କରି) ବଂଦ୍ କର ଏସବୁ !

ଜୟରାଜ : (ଧୀର ଗଳାରେ) ମୁଁ ଦୁଃଖିତ। ପିଇ ଦେଲା ପରେ ମୁଁ ଯାହା ସବୁ କହି ପକାଏ, ତମେ ଧରିବା ଉଚିତ ନୁହେଁ।

ରତ୍ନା : ମୋତେ ବି କ୍ଷମା କର। ମାନସିକ ସ୍ତରରେ ମୁଁ ଯେତେବେଳେ ଅସ୍ଥିର ଥାଏ ମୁଁ କ'ଣ କହେ ମୁଁ ନିଜେ ଜାଣେନା...

ଜୟରାଜ : ତୁମେ ଯାହା କୁହ, ତାହା ସତ ବୋଲି ବିଶ୍ୱାସ କରନି ତୁମେ ?

ରତ୍ନା : ନା।

ଜୟରାଜ : ମଜା କଥା, ମୁଁ କିନ୍ତୁ କରେ।

ରତ୍ନା : ଲତାର ନାଚ କାର୍ଯ୍ୟକ୍ରମ ପାଇଁ ମୁଁ କେତେ ଉତ୍ସୁକ ତମେ ଜାଣିଛ। ଯଦି ଭଲ କରେ, ତେବେ ସେ ସାରା ଦେଶରେ ନାଁ କରିବ। ଯଦି ଆମେ ଠିକ୍ ମନ୍ତ୍ରୀଙ୍କୁ ଟିକେ ତେଲ ମାରିଦବା, ତା' ହେଲେ ଆମେ ବିଦେଶଗସ୍ତ ବି ଯୋଗାଡ଼ କରି ପାରିବା। କେତେ ସଂଘର୍ଷ କରିବାକୁ ପଡ଼ିଲା ଆମକୁ। ତୁମେ ଜାଣ। ଏକଥା ଅନ୍ତତଃ ମୁଁ ନିଶ୍ଚିତ କରିବାକୁ ଚାହେଁ। ଲତାକୁ ସେ ଭଳି କଷ୍ଟର ସାମ୍ନା କରିବାକୁ ନ ପଡୁ। ମୁଁ କ'ଣ ଭାବୁଛି, ତୁମେ ଅନ୍ତତଃ ବୁଝିବା ଦରକାର...

ଜୟରାଜ : କଥା ବଦଳାଅନି ଜମା।

ରତ୍ନା : ମୁଁ କେବଳ ତର୍ଜମା କରୁଛି।

ଜୟରାଜ : ଯଦି ମୋ ବିଷୟରେ ତମେ ଏଇ ଧାରଣା କରିଛ, ତେବେ ଏତେ ବର୍ଷ ଧରି ତୁମ ଭିତରେ ଏ କଥା ଲୁଚେଇ ରଖି ପାରିଥିବାରୁ, ମୁଁ ତୁମକୁ ଅଭିନନ୍ଦନ ଜଣଉଛି। ଖରାପ ଭାବନି ଏ ବିଷୟରେ ! ଦିନେ ନା ଦିନେ ଏ କଥା ବାହାରକୁ ଆସିବାର ହିଁ ଥିଲା। ଯା' ହେଲେ ବି ତୁମେ ମଣିଷ।

ରତ୍ନା : ମୁଁ ତ ମଣିଷ, ତୁମେ ବି ମଣିଷ! କ'ଣ ହବ, ଯଦି ତୁମେ ନିଜର ପରିବାରକୁ ସାହାଯ୍ୟ କରି ନ ପାରିଲ? ତୁମେ ସବୁବେଳେ ଚାହୁଁଥିଲ... ଉଚ୍ଚତର ବିଷୟ। ଟଙ୍କା ଠାରୁ ଆଉ ଟିକେ ଅଧିକା ବିଷୟ, ଏଇମିତି କିଛି। ଏବଂ ଯେହେତୁ ତୁମ ବାପାଙ୍କର ଏ ଘରଟା ଥିଲା ଏବଂ ସେ ଆମକୁ ସାହଯ୍ୟ କରି ପାରିଥାନ୍ତେ, ଏପରି କୌଣସି କାରଣ ବି ନ ଥିଲା ଆମେ କାହିଁକି କରି ପାରିଲନି...

ଜୟରାଜ : ତାଙ୍କୁ ଛାଡ଼ିବା ପରେ? ଫେରି ଆସିବା ଏବଂ ପରାଜୟକୁ ସ୍ୱୀକାର କରିବା?

ରତ୍ନା : ସେଇଟା ଗୋଟେ କ୍ଷଣିକ ନିଷ୍ପତ୍ତି ଥିଲା। ସେଥିପାଇଁ ଆମେ ଦୁହେଁ ଦାୟୀ।

ଜୟରାଜ : ବଡ଼ ଦୟାଳୁ ତୁମେ। ଅନ୍ତତଃ ମୋତେ ଏକୁଟିଆ ଦାୟୀ କରିନ। ହେଇପାରେ ଏଇଟା ତମ ଦୟାଳୁ ଭାବ ନୁହେଁ, ତାଠୁଁ ଆହୁରି କିଛି ଗଭୀର... ଦୋଷୀ ଭାବ? ତୁମେ ମତେ କ୍ଷମା କଲ ମୁଁ ତୁମକୁ କ୍ଷମା କରି ଦେଲି। କ୍ଷମା କରି ଦେଉଛି ତୁମେ ଶଙ୍କର ପ୍ରତି ଯାହା କଲ....

ରତ୍ନା : ସେ ନାଁ ମୋ ସାମ୍ନାରେ ଧରନି!

ଜୟରାଜ : ଓ... ନା... ନା! ଧରିବନି। ତୁମକୁ ମୁଁ କ୍ଷମା କରି ଦେଉଛି। ଆଉ କେବେ ଶଙ୍କର ନାଁ ଜିଭକୁ ଆଣିବିନି...

ରତ୍ନା : ଓଃ! (କ୍ଷୀଣ ଭାବେ) ତୁମେ ଏକଦମ୍ ପ୍ରତିଜ୍ଞା! କରିଦେଲ। ଓ, ମୁଁ କେବଳ ଇଚ୍ଛା କରିଥିଲି...।

ଜୟରାଜ : କ'ଣ? ଅନ୍ତତଃ ଆମେ ଦୁହେଁ ପୁଣି ଆରମ୍ଭ କରି ପାରିବା?

ରତ୍ନା : ଓଃ, ଜାଣେନା ମୁଁ। ଏବେ ସେ ସବୁ ଏତେ ଛୋଟ କଥା ଭଳି ଲାଗୁଛନ୍ତି।

ଜୟରାଜ : ବଳି ଦେବା ଭଳି କିଛି ନୁହଁ।

ରତ୍ନା : (ଜୟରାଜକୁ ଚାହିଁ ରହେ) ବହୁତ ବଡ଼ ମୂଲ୍ୟ ଦେବାକୁ ହେଲା, ଜୟ।

ଜୟରାଜ : ତଥାପି ସେମିତିକା ଗୋଟେ ଜୀବନ ତୁମ ଝିଅ ପାଇଁ ବି ତୁମେ କାମନା କରୁଛ।

ରତ୍ନା : ସମୟ ବଦଳି ଯାଇଛି ଏବଂ ସବୁ କଥା ତା' ପାଇଁ ସହଜ ହେଇଯିବ କୌଣସି ନା କୌଣସି ବାଟରେ। ଅବଶ୍ୟ, ସେ ବହୁତ ଗୁଣୀ ଏବଂ ପ୍ରସିଦ୍ଧ ବି ହେଇଯିବ।

ଜୟରାଜ : ଏଇଆ ତା'ହେଲେ ଯାହା ଆମେ ସାରା ଜୀବନକାଳ ଚାହିଁ ଆସିଛେ ?

ରତ୍ନା : ହଁ! ଆମେ ଯେତିକି ନାଁ କମେଇଲୁ ମୁଁ ଚାହେଁ ଲତା ତା'ଠୁଁ ଅଧିକ ଅଧିକ ନାଁ କମାଉ। କାହିଁକି, ସେ ସବୁଙ୍କ ଠାରୁ ଆଗରେ ରହି ପାରିବ ! କେବଳ ଆମକୁ ସେ ଆଗକୁ ଯିବାଲାଗି ଟିକିଏ ଯାହା ଚେଷ୍ଟା କରିବାକୁ ହବ। ସେ କେବେ ବି ଅସଫଳ ହବନି ଯେତେଦିନ ଯାକେ ଆମ ଅଭିଜ୍ଞତା ତା' ପଛରେ ରହିଛି। ହଁ, ତାକୁ ଶୀର୍ଷ ସ୍ଥାନରେ ପହଂଚାଇବା ଲାଗି ମୁଁ ସବୁକିଛି କରିବି। ମୋ କହିବାର ଅର୍ଥ ହେଉଛି ଗୋଟେ କୁଭି ଚନ୍ଦ୍ରକଳା ପ୍ରତି ବି ମୁଁ ଖୁବ୍ ଭଦ୍ରାମୀ ବ୍ୟବହାର କରିପାରେ।

ଜୟରାଜ : ବଢ଼ିଆ। ଏବେ ତୁମେ ଖୁବ୍ ସହଜ ଆଉ ସାଧାରଣ ଲାଗୁଚ।

ରତ୍ନା : ଦଶ ଦିନ ଭିତରେ ତୁମେ ଦେଖିବ। ସହର ସାରା ଲୋକେ କେବଳ ଲତା ବିଷୟରେ ହିଁ ଚର୍ଚ୍ଚା କରିବେ। ମୁଁ କଥା ଦେଇଛି ସି.ଭି. ସୁରୀକୁ, ନବରାତ୍ରୀ ଉତ୍ସବରେ ଏଥର ମୁଁ ତାକୁ ମୁଖ୍ୟ ଅତିଥି କରିବି। ପୁରୁଣା କାଳିଆ ସେଇ ବୁଢ଼ା ମଞ୍ଚ ଉପରେ ଫୁଲମାଳ ଲଗାଇବାକୁ ଭାରି ଭଲପାଏ। ଆଉ ଯଦି ସେ ତା' ଖବରକାଗଜରେ ଲତା ନାଚ ଉପରେ ଗୋଟେ ଭଲ ଲେଖା ଲେଖି ଦିଏ, ଅନ୍ୟମାନେ ତା' ବିରୁଦ୍ଧରେ ଲେଖିବା ଲାଗି ସ୍ୱପ୍ନରେ ବି ଭାବିବେନି। ସବୁ କଥା ଠିକ୍ ଠିକ୍ ହେଇଥାନ୍ତା, ଯଦି ସେ ଶ୍ରୀନୁଟା... ଛାଡ଼, କାଲି ସକାଳେ ସେ କଥା ଆମେ ଚିନ୍ତା କରିବା। ମୁଁ ଏବେ ଶୋଇବାକୁ ଚାଲିଲି। (ଯିବା ଲାଗି ଉଦ୍ୟତ)

ଜୟରାଜ : (କପ୍‌ବୋର୍ଡ଼ ଭିତରେ ବୋତଲ ଗ୍ଲାସ୍ ରଖେ) ବିଶ୍ୱାସ ବିଷୟରେ ତୁମେ କ'ଣ ଭାବୁଚ ?

ରତ୍ନା : (ଅଟକି ଯାଇ) କିଏ ?

ଜୟରାଜ : ଆଜି ରାତିରେ ଲତା ଯୋଉ ପିଲାଟାକୁ ଘରକୁ ଆଣିଥିଲା।

ରତ୍ନା : ଠିକ୍ ଅଛି। ଟିକେ ଅଲଗା ଧରଣର। ହେଲେ ବି ଠିକ୍ ଅଛି। କାହିଁକି ?

ଜୟରାଜ : ସେମିତି ବିଶେଷ କିଛି କାରଣ ନାହିଁ। ସେ ଦୁହେଁ ବାହା ହୁଅନ୍ତୁ ବୋଲି ମୁଁ ରାଜି ହେଇଯାଇଛି। ବାସ୍।

ରତ୍ନା : ତା'ର ଆର୍ଥିକ ଅବସ୍ଥା ଭଲ। ଭଲ ନୁହଁ?

ଜୟରାଜ : ମୋତେ ଯାହା କହିଲା, ହଁ ଭଲ।

ରତ୍ନା : ଆଉ ଲତାକୁ ନାଚିବା ଲାଗି ଅନୁମତି ଦବ?

ଜୟରାଜ : ହଁ।

ରତ୍ନା : ତା'ହେଲେ (ପ୍ରସ୍ଥାନ ପୂର୍ବରୁ) ନବରାତ୍ରୀ ଉତ୍ସବ ପରେ ହିଁ ବାହାଘର ହବ ବୋଲି ନିଶ୍ଚିତ କର। (ବେଡ୍‌ରୁମ୍‌କୁ ପ୍ରସ୍ଥାନ) (ଜୟରାଜ ହାଇମାରେ ଏବଂ ବେଡ୍‌ରୁମ୍‌କୁ ଯିବା ଆଗରୁ 'ଶାଲ୍' ଦୃଷ୍ଟିରେ ପଡ଼େ। ସେ ତା' ପାଖକୁ ଯାଇ 'ଶାଲ'ଟିକୁ ଉଠାଏ, ଭାଂଗିଭୁଙ୍ଗି କପ୍ ବୋର୍ଡ଼ରେ ରଖିବା ଲାଗି ଯିବା ଆଗରୁ ମାନସିକତାରେ ପରିବର୍ତ୍ତନ ଆସେ।)

ଜୟରାଜ : (ନିଜକୁ) ତୁମର ଶେଷ ସ୍ମୃତି। ଖୁବ୍ ଶୀଘ୍ର ତୁମକୁ ବି ହଟେଇ ଦେବି। ତା'ପରେ ଏ ଶାଲ ଘୋଡ଼େଇ ହେଇ ଏ ରୁମ୍‌ରେ ଏପଟ ସେପଟ ହବା ଦେଖିବିନି ମୁଁ। (ବଂଶୀ ସହ ମୃଦଙ୍ଗର ସ୍ୱର ଶୁଣାଯାଏ) ଏ ଶାଲ୍ ତୁମକୁ ଘୋଡ଼େଇ ହବା ଦେଖିବିନି। ଏ ରୁମ୍ ଭିତରେ ତୁମକୁ ଏ ପାଖ ସେ ପାଖ ହଉଥିବା ଦେଖିବିନି। (ଧୀର ତଥା ଦ୍ରୁତ ଗତିରେ ଚାଲୁଥିବା ବେଳେ ଆଲୋକ ଧୀରେ ଧୀରେ ନିଷ୍ପ୍ରଭ ହେବାରେ ଲାଗିଥାଏ) ଏ ଶାଲ୍ ଘୋଡ଼େଇ ହବା ଆଉ ଏ ଘର ଭିତରେ ଏ ପାଖ ସେ ପାଖ ହବା ଦେଖିବିନି। ଏ ପାଖ ସେ ପାଖ ଶାଲ୍ ଘୋଡ଼େଇ ହେଇ। (ଜୟରାଜ ଶାଲ୍ ଘୋଡ଼େଇ ହୁଅନ୍ତି। ହଠାତ୍ ତାଙ୍କ ଉପରେ ସ୍ପଟ ଲାଇଟ ପଡ଼େ। ସଂଗୀତ ସାଂଗକୁ ଧୀରେ ଧୀରେ ନୃତ୍ୟର ଯତିପାତ ଏବଂ ଧା...ଧା... ଧୀନ୍... ତେରେକେଟ ଧା' ଇତ୍ୟାଦି ନୃତ୍ୟର ବୋଲ୍ ବି ଶୁଣାଯାଏ। ଡ୍ରଇଂରୁମ୍‌ଟି ହଠାତ୍ ରୂପାନ୍ତରିତ ହେଇଯାଏ ଗୋଟିଏ ସୁନ୍ଦର ବଗିଚାରେ। ସ୍ପଷ୍ଟ ଲାଇଟ୍ ପଡ଼େ ଜଣେ ଯୁବକ ଉପରେ ଯାହାର ପଛ ପଟଟି ନୃତ୍ୟ ଭଂଗୀମାରେ ହିଁ ଦର୍ଶକ ମାନଙ୍କୁ ଦେଖାଯାଏ। ସେ ଘୁଙ୍ଗୁର ପିନ୍ଧିଥା'ନ୍ତି। ଏବଂ ତାଙ୍କ ଅଣ୍ଟା ଚାରିପଟେ ବଂଧା ହେଇଥାଏ ଗୋଟେ ପଟି ତାଙ୍କ ସାମ୍ନାରେ ବସିଥା'ନ୍ତି ଜଣେ ଯୁବତୀ। ସମସ୍ତ

ଚରିତ୍ର ବଦଳି ଯାଇଥା'ନ୍ତି। ଜୟରାଜ ହେଇଥା'ନ୍ତି ବାପା ଅମୃତଲାଲ୍ ପାରେଖ। ବିଶ୍ୱାସ ହେଇଥାନ୍ତି ଜୟରାଜ। ଲତା ହେଇଥାନ୍ତି ରତ୍ନା। ସେମାନଙ୍କ ବୟସ ପୂର୍ବ ଚରିତ୍ରଙ୍କ ଭଳି ସମାନ ଥାଏ। ଏବେ କାର ସମୟ ହେଉଛି ୧୯୪୦ ପାଖାପାଖି।

ଅମୃତ ଲାଲ୍ : (ଚିତ୍କାର କରି) ଜୟ! (କୌଣସି ଉତ୍ତର ନାହିଁ) ଜୟରାଜ! (ଚାରିଆଡ଼େ ପୂରା ଆଲୋକ ପଡ଼େ। ବଂଦ୍ ହେଇ ଆସୁଥିବା ସଂଗୀତର ତାଳେ ତାଳେ ମୂକ ଅଭିନୟ ନୃତ୍ୟ କରୁଥାନ୍ତି। ସଂଗୀତ ବଂଦ୍ ହେଇଯାଏ।

ଜୟରାଜ : (ଚିତ୍କାର କରି) କ'ଣ?

ଅମୃତଲାଲ୍ : ମୁଁ ଯେତେବେଳେ ଡାକୁଛି, ଦୟାକରି ତୋ ମୁହଁଟା ଅନ୍ତତଃ ଦେଖା।

ଜୟରାଜ : ଏବେ ଯେଉଁଟା ଡ୍ରଇଂରୁମ୍, ସେଇଠିକୁ ଆସେ। ଚାଲିବା ବେଳେ ଗୋଡ଼ରେ ପିନ୍ଧିଥିବା ଘୁଙ୍ଗୁର ଛମ୍ ଛମ୍ ଆବାଜ କରୁଥାଏ) କ'ଣ କଥା ବାପା? ମୁଁ ଗୋଟେ ଆଇଟମ୍ ଅଧା କରିଛି।

ଅମୃତଲାଲ : କ'ଣ? ଏବେ ବି ଅଧା ହେଇଛି। ସାରା ଦିନ ତ ଏଇଆ କରୁଚୁ।

ଜୟରାଜ : ସାରାଦିନ ନୁହେଁ। ଖରାବେଳେ ଖାଇବା ଲାଗି ବହୁତ ସମୟ ବଂଦ୍ ଥିଲା।

ଅମୃତଲାଲ : କେତେ ସମୟ ଆଉ ଚାଲିବ ଏଇଟା?

ଜୟରାଜ : ମୋତେ ଜଣା ନାହିଁ। ରତ୍ନା ଆଉ ମୁଁ କେବଳ ଅଙ୍ଗଭଙ୍ଗୀ କରୁଛୁ, ଗୁରୁଜୀ ହିଁ କହି ପାରିବେ କେତେବେଳେ ବଂଦ୍ କରିବାକୁ ହବ। ତମେ କ'ଣ ଚାହୁଁଚ, କହିବ କି ବାପା? ବେଶି ସମୟ ଅପେକ୍ଷା କରିବାକୁ ଗୁରୁଜୀ ଭଲ ପାଆନ୍ତିନି।

ଅମୃତଲାଲ : ଏ ସବୁ ବାଜେ କୋଳାହଳ ବଂଦ୍ କର। ମୁଁ ଚାହେଁ। ଗୁରୁଜୀଙ୍କୁ ବିଦା କର ମୁଁ ଚାହେଁ। ଏଇଆ ଚାହେଁ ମୁଁ।

ଜୟରାଜ : ତୁମକୁ ଆଉ କିଛି ସମୟ ଅପେକ୍ଷା କରିବାକୁ ପଡ଼ିବ।

ରତ୍ନା : (ନାଚ ହଲ୍‌ରୁ ବାହାରକୁ ଆସିବା) ତୁମେ ଆସୁଚ? ଗୁରୁଜୀ ଅପେକ୍ଷା କରିଛନ୍ତି। ପୁଣିଥରେ ମୋ ସହ ତୁମେ ଜିତିସ୍ୱରମ୍ କରିବାକୁ କହୁଛନ୍ତି।

ଅମୃତଲାଲ୍ : ତାଙ୍କୁ କହିଦିଅ ଏବେ ସେ ବ୍ୟସ୍ତ ଅଛି।

ରତ୍ନା : ଜୟ ?

ଜୟରାଜ : ଗୋଟେ ମିନିଟ୍‌ରେ ଆସୁଛି, ରତ୍ନା।

ରତ୍ନା : ବିରକ୍ତ ହେଲେ ସେ କ'ଣ କରନ୍ତି ତୁମେ ଜାଣିଛ। (ପ୍ରସ୍ଥାନ, ଗୁରୁଜୀ ଏବଂ ସଂଗୀତ ବାଦକମାନଙ୍କ ସାମ୍ନାରେ ମୂକ ଅଭିନୟ କରିବା)

ଜୟରାଜ : କ'ଣ ଏବେ ଏମିତି ଦରକାର ପଡ଼ିଲା ?

ଅମୃତଲାଲ୍ : ଏବେ କିଛି ଲୋକଙ୍କର ଆସିବାର ଅଛି। ସେମାନେ ଆସିବା ଆଗରୁ ଏ ସଂଗୀତ ବାଦକମାନେ ଏ ଜାଗା ଛାଡ଼ନ୍ତୁ। ମୁଁ ଚାହେଁ।

ଜୟରାଜ : ତୁମ ଅତିଥିମାନେ ଆସିବା କ୍ଷଣି ଏମାନେ ଏ ଜାଗା ଛାଡ଼ିଦେବେ, ମୁଁ କଥା ଦଉଚି।

ଅମୃତଲାଲ୍ : ଏବେ ସେମାନଙ୍କୁ କାଢ଼।

ଜୟରାଜ : ହଠାତ୍ ସେମାନଙ୍କୁ ଏ ଜାଗା ଛାଡ଼ି ଚାଲି ଯିବାକୁ ମୁଁ କହି ପାରିବିନି !

ଅମୃତଲାଲ୍ : ତୋ ଗୁରୁଜୀଙ୍କର ଅନ୍ୟ କେହି ଛାତ୍ର ନାହାନ୍ତି ?

ଜୟରାଜ : ସାରା ଭାରତରେ, ସବୁଠୁ ବେଶି ପ୍ରଭାବ ଥିବା ଗୁରୁଜୀ ଇଏ।

ଅମୃତଲାଲ୍ : ତା'ହେଲେ ସାରାଦିନ ମୋରି ଘରେ ସେ ପଡ଼ି ରହିଛନ୍ତି କାହିଁକି ?

ଜୟରାଜ : ସେ ବିଷୟରେ ଏଇନେ ମୁଁ ତୁମ ସହ ଯୁକ୍ତି କରିପାରିବିନି। ଏବେ ମୋତେ କ୍ଷମା କର, ବହୁତ କାମ କରିବାକୁ ଅଛି ମୋର। (ନାଚ ହଲ୍ ଆଡ଼କୁ ଯିବା ଲାଗି ଉଦ୍ୟତ)

ରତ୍ନା : (ନାଚ ହଲ ଆଡୁ ଜୟରାଜ ପାଖକୁ ଆସିବା) ଯେହେତୁ ଆମେ ଏବେ ବଂଦ୍ କରିଛେ, ସଂଗୀତଜ୍ଞମାନେ କଫି ମାଗୁଛନ୍ତି। (ରୋଷେଇଶାଳ ଆଡ଼େ ଯାଉ ଯାଉ, ଅମୃତଲାଲଙ୍କ ପ୍ରତି) ସଂଗୀତଜ୍ଞମାନେ ! ସବୁକଥାରେ ସେମାନେ ବାହାନା ଖୋଜନ୍ତି। ମୁଁ ଆପଣଙ୍କ ପାଇଁ ଚା' ଆଣୁଛି।

ଅମୃତଲାଲ : ମୋ ପାଇଁ ବ୍ୟସ୍ତ ହବାର ନାହିଁ। ତୁମ ଅତିଥିମାନଙ୍କ ଯତ୍ନ ନିଅ !

ରନ୍ନା : କଫି ଲାଗି ବେଶି ସମୟ ଲାଗିବନି । ନିକର ହେଇ ସାରିଛି । (ରୋଷେଇଶାଳକୁ ଯା'ନ୍ତି) ।

ଜୟରାଜ : ଏ ଘରେ ଠିକ୍ ଭାବେ ରିହର୍‌ସାଲ ବି କରି ହଉନି ।

ଅମୃତଲାଲ୍ : ଏ ଘରେ ଠିକ୍ ଭାବେ ରିହର୍‌ସାଲ ବି କରି ହଉନି ? ଟିକେ ଶାନ୍ତି କି ନୀରବତା ମୁଁ ପାଇପାରୁନି ମୋ ନିଜ ଘରେ ! ଲାଇବ୍ରେରୀଟାକୁ ନାଚ ହଲ କରିଦେଇ ବହୁତ ଖରାପ ହେଇଛି ।

ଜୟରାଜ : ଯଦି ଚାହୁଁ ନ ଥିଲ ତେବେ କଲ କାହିଁକି ?

ଅମୃତଲାଲ୍ : ଭାବିଥିଲି ଏଇଟା ତୋ'ର ଗୋଟେ ସଉକ୍ । ତୋ'ର ଯଦି କ୍ରିକେଟ ସଉକ ଥା'ନ୍ତା ତା'ହେଲେ ଆମ ଲନ୍‌ରେ ମୁଁ ମୋ ପାଇଁ କ୍ରିକେଟ ପିଚ୍ ବି ତିଆରି କରି ଦେଇଥାନ୍ତି । ଠିକ୍ ଅଛି, ଅନେକ ପିଲାଙ୍କର କ୍ରିକେଟ ସଉକ ଥାଏ, ମୋ ପୁଅର ନାଚ କରିବାରେ ସଉକ, ମୁଁ ଭାବିଲି । ମୋ'ର ଧାରଣା ନ ଥିଲା ତୋ'ର ସଉକଟା ଦିନେ ନିଶାରେ ପରଣତ ହେଇଯିବ ।

ଜୟରାଜ : ତୁମର କ'ଣ କିଛି ନିଶା ନାହିଁ ?

ଅମୃତଲାଲ୍ : ଯଦି ତୁମର ସ୍ୱାଧୀନତା ପାଇଁ ମୁଁ ସଂଗ୍ରାମ କରିବା କଥା ଭାବୁଥାଉ, ହଁ, ମୋ'ର ବି ଏଇଟା ନିଶା ଥିଲା ।

ଜୟରାଜ : ଯଦି ତମର ଥିଲା, ମୋ ପାଇଁ ତ ଅନ୍ତତଃ ଅନୁମତି ଦିଅ ।

ଅମୃତଲାଲ : ଦିହିଁଙ୍କ ଭିତରେ ତୁ ତୁଳନା କରିପାରୁଛୁ କିମିତି ?

ଜୟରାଜ : ଯେତେଦୂର ଯାଏ ମୁଁ ଦେଖି ପାରୁଛି ମୁଁ ତୁଳନା କରି ପାରିବି । ଅମୃତଲାଲ୍ ଯେତେଦୂର ଯାଏ ଦେଖି ପାରୁଛୁ ! ଦୂରକୁ ତୁ ଦେଖି ପାରୁନୁ । ସେଇଟା ହିଁ ତୋ'ର ଅସୁବିଧା । ତୋ ନାଚ ତୋତେ କେତେଦୂର ଯାଏ ନେଇ ଯାଇ ପାରିବ ?

ଜୟରାଜ : ଯଦି ଆମେ ସ୍ୱାଧୀନତା ପାଇ ନ ଥା'ନ୍ତୁ । ତେବେ ସେଇ ସଂଗ୍ରାମ କୁଆଡ଼େ ନେଇଥା'ନ୍ତା ତୁମକୁ ? ଅମୃତଲାଲ୍ : ତୋ'ର ଏ ଅଦ୍ଭୁତ ନିଶା ତୋତେ କିମିତିକା ସ୍ୱାଧୀନତା ଦଉଚି, ମୁଁ ଦେଖିବାକୁ ଚାହେଁ ।

ଜୟରାଜ : ମୁଁ ଯାହା କରିବାକୁ ଚାହେଁ, ସେଇ ସ୍ୱାଧୀନତା।

ଅମୃତଲାଲ୍ : ତୁ ଯେତେବେଳେ ଯାହା କରିବାକୁ ଚାହିଁଛୁ, ମୁଁ ସବୁବେଳେ ତୋତେ ସେ କଥା କରିବାକୁ ଦେଇଛି। ହେଲେ ଏମିତି ଏକ ସମୟ ଆସିଛି। ତୁ ସେଇଆ କରିବୁ, ତୋ ଠାରୁ ଯାହା ଆଶା କରିବା କଥା। ତୁ ନାଚୁଛୁ କାହିଁକି ? ସେଥିରୁ ତୋ'ର ତ ରୋଜଗାର ବି ନାହିଁ। କେବଳ ତୋ ସ୍ତ୍ରୀ ସକାଶେ ? ନାଚିବାକୁ ସେ ତୋତେ ବାଧ କରୁଛି କି ?

ଜୟରାଜ : ମୋତେ କେହି ବାଧ କରୁ ନାହାନ୍ତି।

ଅମୃତଲାଲ : ତୋ ଉପରେ ତା'ର ପ୍ରଭାବ ଥାଇପାରେ। ହେଇପାରେ ସେଇଟା ତା'ର ପସନ୍ଦ, ତୋ'ର ନୁହଁ। ସେଇଟା ହିଁ ମୋ'ର ଦୁଃଖ। ତୋତେ ବାହା ହବା ପାଇଁ ଅନୁମତି ଦେଇଦେବା।

ଜୟରାଜ : ଛଳନା କରନି। ନିଜ ସଂପ୍ରଦାୟ ବାହାରୁ ଗୋଟେ ବୋହୂ ବାଛିବା, ତୁମ ତଥାକଥିତ ଉଦାର ମନୋଭାବାପନ୍ନ ଛବିକୁ ଏଇଟା ଏକଦମ୍ ଖାପ୍ ଖାଇଥିଲା।

ଅମୃତଲାଲ୍ : ଆଉ ସେଇଥିପାଇଁ ମୁଁ ଅନୁତପ୍ତ।

ଜୟରାଜ : କ'ଣ କହିବାକୁ ଚାହଁ ତୁମେ ?

ଅମୃତଲାଲ୍ : ସବୁ ସୋମବାର କୁଆଡ଼େ ଯାଉଛି ସେ ? (ଟିକିଏ ରହି) ତୁ ଜାଣୁ ଅଥଚ କେବେ କହିବୁ ମୋତେ।

ଜୟରାଜ : ଏବେ କୁଆଡ଼େ ପଳେଇଲା ତୁମ ପ୍ରଗତିଶୀଳ ଚିନ୍ତାଧାରା ସବୁ ?

ଅମୃତଲାଲ୍ : ଏ କଥା ଅଲଗା।

ଜୟରାଜ : କୁଆଡ଼େ ଗଲା ସଂଗ୍ରାମ କରିବାର ଉତ୍ସାହ ? ସ୍ୱାଧୀନତା ପାଇବା ଲାଗି ତୁମେ ଲଢ଼େଇ କରି ନ ଥିଲ। ତୁମେ ଲଢ଼େଇ କରିଥିଲ କ୍ଷମତା ପାଇବା ଲାଗି। କାହିଁକି ନା, ଆମକୁ ଯେଉଁମାନେ ଆଗରୁ ଶାସନ କରୁଥିଲେ, ତୁମେ ତାଙ୍କ ପରି ହୀନମନା ଆଉ ଚୁଟିଆ ଥିଲ।

ଅମୃତଲାଲ୍ : ତୋ'ର ଧାରଣା ଏକଦମ୍ ଭୁଲ୍। ସ୍ୱାଧୀନତା ଲାଭ କରିବା ଆମର ଏକମାତ୍ର ଅଭିପ୍ରାୟ ଥିଲା। ଜଣେ କାହାକୁ ତ ଏ ଦାୟିତ୍ୱ ଦବାର

ଥିଲା। ଯାହା ଆମେ ସେତେବେଳେ କରିଥିଲୁ ସେ କଥା ଲୋକେ ଏବେ ବୁଝୁଛନ୍ତି। ତୁ ଜାଣୁ, ଆମ ସମାଜରେ ଥିବା ଗୁଡ଼ାଏ ଅବାଂଛିତ ତଥା କୁପ୍ରଥାକୁ ହଟାଇବା ଲାଗି ଆମେ ଅଗ୍ରାଧିକାର ଦେଇଥିଲୁ।

ଜୟରାଜ : ଯେମିତି ଅସ୍ପୃଶ୍ୟତା ଆଉ ଯୌତୁକ ପ୍ରଥା।

ଅମୃତଲାଲ୍ : ହଁ ସେ କଥା ବି। ଆଉ ତୁ ଜାଣୁ, ମୁଁ କ'ଣ କହିବାକୁ ଚାହେଁ।

ଜୟରାଜ : ତୁମର ସେ ବିଷୟରେ ଆଦୌ ଧାରଣା ନାହିଁ। ତୁମେ ଜଣେ ଅଜ୍ଞ।

ଅମୃତଲାଲ୍ : ଆମେ ଏଇ ଅଭାଗା ନାରୀମାନଙ୍କ ପାଇଁ ଆଶ୍ରମ ତିଆରି କରିଛୁ, ସେମାନଙ୍କୁ ଶିକ୍ଷା ପ୍ରଦାନ କରୁଛୁ, ସେମାନଙ୍କ ଜୀବନକୁ ପୁନର୍ଗଠନ....

ଜୟରାଜ : ପୁନର୍ଗଠନ ! ପୁନର୍ଗଠନ ବିଷୟରେ କିଛି କୁହନା। ଯଦି ତୁମେମାନେ ପ୍ରକୃତରେ ଆମ ସମାଜରେ ସେମାନଙ୍କୁ ପୁନର୍ଗଠନ କରିବାକୁ ଚାହିଁଥା'ନ୍ତ ତେବେ ତୁମେ ସେମାନଙ୍କ କଳା ଅଭ୍ୟାସ କରିବାକୁ ଅନୁମତି ଦେଇଥା'ନ୍ତ।

ଅମୃତଲାଲ୍ : ବେଶ୍ୟାବୃତ୍ତି ବଢ଼ାଇବାରେ ସାହାଯ୍ୟ କରିଥା'ନ୍ତେ ?

ଜୟରାଜ : ସେମାନଙ୍କୁ ମନ୍ଦିରକୁ ପୁଣି ପଠେଇ ଦେଇଥା'ନ୍ତା ! ନିଜ କଳା ନିପୁଣତାକୁ ବଂଚାଇ ରଖିବା ଯୋଗୁଁ ପୁରସ୍କୃତ କରିଥା'ନ୍ତ।

ଅମୃତଲାଲ୍ : ବାବୁରେ, ତୁ ଗୋଟେ ମୂର୍ଖ। ଯେଉଁ 'କଳା' କଥା ତୁ କହୁଚୁ, କେବେଠୁଁ ସେମାନେ ତାକୁ ପରିତ୍ୟାଗ କରି ନିଜ ଦେହ ବିକିବାରେ ଲାଗିଛନ୍ତି।

ଜୟରାଜ : ସେଥିପାଇଁ ମୁଁ ତୁମକୁ ଦାୟୀ କରିବି।

ଅମୃତଲାଲ୍ : ତୋ ମୁଣ୍ଡ ଖରାପ ହେଇଗଲାଣି।

ଜୟରାଜ : ସେମାନଙ୍କୁ ତାଙ୍କ ଘର ଫେରାଇ ଦିଅ। ସେମାନଙ୍କୁ ତାଙ୍କ କୌଳିକ ବୃତ୍ତି ଫେରାଇ ଦିଅ।

ଅମୃତଲାଲ୍ : ଆମ ମନ୍ଦିରମାନଙ୍କୁ ମୁଁ ବେଶ୍ୟାଳୟ କରିବାକୁ ଦେବିନି !

ଜୟରାଜ : ଏବଂ ନିଜକୁ ଆଦର୍ଶବାଦୀ ବୋଲାଉଥିବା କିଛି ଛଳନାକାରୀ ତଥା ସଂକୀର୍ଣ୍ଣମନାଙ୍କ ହାତରେ ମୋ'ର କଳାର ଅଧୋଗତି ହେବାକୁ ମୁଁ ଦେବିନି।

ଅମୃତଲାଲ୍ : ତୋ କଳାର କେହି ଅଧୋଗତି କରୁ ନାହାନ୍ତି। ଲୋକେ ହିଁ ଏହାର କର୍ତ୍ତା ଏବଂ ସେଇ କାରଣରୁ, ଆମେ ଚେଷ୍ଟା କରୁଛୁ...

ଜୟରାଜ : ଠିକ୍ ଅଛି ତେବେ ! ତୁମର ଖୁସି ହେବା କଥା ଯେ ଏଇ ନୃତ୍ୟକୁ ପୁନର୍ଜୀବନ ଦେବାଲାଗି ତୁମ ଭଳି ସମ୍ମାନଜନକ ପରିବାରର ଲୋକେ ଆଗ୍ରହ ଦେଖାଇଛନ୍ତି। ତୁମେ ଆମକୁ ବାଟ ଓଗାଳିବା ପରିବର୍ତ୍ତେ ପ୍ରୋତ୍ସାହନ ଦେଖାଇବା କଥା।

ଅମୃତଲାଲ୍ : ଏ କଳାର ପୁନରୁଦ୍ଧାର ଲାଗି ମୋ'ର ଆଦୌ ଆପତ୍ତି ନାହିଁ। ମାତ୍ର ତୁ ଯାହା ସହ ମିଶି ଏ କାମଟି କରୁଛୁ, ତାଙ୍କୁ ମୁଁ ବିରୋଧ କରେ।

ଜୟରାଜ : କ'ଣ କହିବାକୁ ଚାହଁ ତୁମେ ?

ଅମୃତଲାଲ୍ : ତୋ'ର ଗୁରୁ। କୋଉ ଭଳିଆ ପରିବାରରୁ ଆସିଛନ୍ତି ସେ ?

ଜୟରାଜ : ତାଙ୍କ ମା' ଦେବଦାସୀ ନ ଥିଲେ, ଯଦି ଏଇୟା ଜାଣିବାକୁ ଚାହୁଁଛ ତୁମେ।

ଅମୃତଲାଲ୍ : ଏତେ ଲମ୍ବା ଲମ୍ବା ବାଳ ବଢ଼େଇଛନ୍ତି ସେ କାହିଁକି ?

ଜୟରାଜ : ତୁମେ ପଚାରୁଛ କାହିଁକି ? ଅମୃତଲାଲ୍ : ଏତେ ଲମ୍ବା ବାଳ ରଖିଥିବା ଲୋକଙ୍କୁ ମୁଁ କେବେ ଦେଖିନି।

ଜୟରାଜ : ପ୍ରତ୍ୟେକ ସାଧୁଙ୍କର ବାଳ ହେଉଛି ଲମ୍ବା।

ଅମୃତଲାଲ୍ : ମୁଁ ସେମାନଙ୍କ କଥା କହୁନି। ସାଧାରଣ ଲୋକଙ୍କ କଥା କହୁଛି ମୁଁ।

ଜୟରାଜ : କ'ଣ କହିବାକୁ ଚାହଁ ତୁମେ ?

ଅମୃତଲାଲ୍ : ମୁଁ ଏଇଆ କହିବାକୁ ଚାହେଁ ଯେ ସାଧାରଣ ପୁରୁଷଲୋକେ ଏତେ ଲମ୍ବା ଲମ୍ବା ବାଳ ରଖନ୍ତିନି।

ଜୟରାଜ : ତୁମେ କ'ଣ କହିବାକୁ ଚାହୁଁଛ ଯେ ସେ ପୁରୁଷ .... (ହୃଦୟଙ୍ଗମ କରିପାରି) ତୁମେ କହିବାକୁ ଚାହୁଁଛ ଯେ.... ?

ଅମୃତଲାଲ୍ : ତାଙ୍କ ଚାଲିବା ଭଂଗୀ ବି ମୁଁ ଲକ୍ଷ୍ୟ କରିଛି।

ଜୟରାଜ : (ରାଗି କରି) ଏ ସବୁ ଖୁବ୍ ବିରକ୍ତିକର ! ତୁମେ ଜଣେ ପାଗଳ !

| | | |
|---|---|---|
| ରତ୍ନା | : | (ଗୋଟେ ଟ୍ରେ ଉପରେ କିଛି କପ୍ ଧରି ପ୍ରବେଶ କରେ) କଫି ! ଶିଳ୍ପୀମାନଙ୍କ ପାଇଁ କଫି ! ଜୟ, ତୁମକୁ ଏଇଠି ଦେବି ନା ଗୁରୁଜୀଙ୍କ ସହ ବସି ପିଇବ ? ତୁମ ବାପାଙ୍କ ଚା' ଏଇ ସାଂଗେ ସାଂଗେ ଆଣୁଛି। (ଜୟରାଜ କୌଣସି ଉତ୍ତର ଦିଅନ୍ତିନି) ଜୟ ? କଫି ଏଠି ରଖିବି ନା ଗୁରୁଜୀଙ୍କ ସହ ବସିବ? (କିନ୍ତୁ ଉତ୍ତର ନାହିଁ) ଠିକ୍ ଅଛି, ଏଇଠି ତା'ହେଲେ ରଖୁଚି ଆଉ ମୋ ଚା' ବି.... |
| ଜୟରାଜ | : | ଭିତରକୁ ନେଇ ଯାଅ, ଗୁରୁଜୀଙ୍କ ସହ ମୁଁ ପିଇବି। |
| ରତ୍ନା | : | ଠିକ୍ ଅଛି। ଏଠି ବି ପିଇପାର। ତମ ବାପାଙ୍କ ସାଂଗ ଦିଅ। ମୁଁ ସେଠି ଚଳେଇ ନେବି... |
| ଜୟରାଜ | : | (କଠୋର ଭାବେ) ମତେ ଟ୍ରେ ଦିଅ। ମୁଁ ସେମାନଙ୍କୁ ଦେବି। (ରତ୍ନା ଠାରୁ ଟ୍ରେ ନିଅନ୍ତି)। ତୁମେ ତୁମ ଶଶୁରଙ୍କ ପାଇଁ ଚା' କର।<br>(ନାଚ ହଲକୁ ଚାଲିଯା'ନ୍ତି) |
| ରତ୍ନା | : | (କିଛି ବୁଝି ନ ପାରିଲା ପରି ଜୟରାଜକୁ ଅନେଇ ରହନ୍ତି ଏବଂ ପରେ ପରେ ଅମୃତଲାଲଙ୍କ ପ୍ରତି) ଏଇନେ ମୁଁ ଚା'... |
| ଅମୃତଲାଲ୍ | : | ମୋ ଚା' ଦରକାର ନାହିଁ। |
| ରତ୍ନା | : | ସତ କହୁଛି, କିଛି ଅସୁବିଧା ନାହିଁ। |
| ଅମୃତଲାଲ୍ | : | ବସ। (ଚୁପ୍‌ଚାପ୍ ଅବସ୍ଥା) ବସ ରତ୍ନା। (ରତ୍ନା ବସିପଡ଼େ। ଜୟରାଜ ସଂଗୀତ ବାଦକମାନଙ୍କୁ ଚା ଦବା ଏବଂ ଗୁରୁଜୀଙ୍କ ସହ କଥା ହେଉଥିବାର ମୂକ ଅଭିନୟ କରେ।) |
| ରତ୍ନା | : | କ'ଣ ହେଇଛି ? |
| ଅମୃତଲାଲ୍ | : | ହୁଁ। |
| ରତ୍ନା | : | ଆପଣ ଦୁହିଁଙ୍କ ଭିତରେ କ'ଣ ହେଲା ? ସେ ଖୁବ୍ ବିବ୍ରତ ଦେଖା ଯାଉଥିଲେ..... |
| ଅମୃତଲାଲ୍ | : | କିଛି ହେଇନି। ଆମେ ଏମିତି କଥା ହେଉଥିଲୁ, ମୁଁ ତାକୁ ଯେ ଲମ୍ବା ବାଳ କଥା କହି ଦେଲି ତ... (ରତ୍ନା ହସିବା) ଏଥିରେ ହସିବାର କ'ଣ ଅଛି ? |

ରତ୍ନା : ଓ, ସେ ଆପଣଙ୍କୁ ଏକଥା କହିଲେ ?

ଅମୃତଲାଲ୍ : କ'ଣ ?

ରତ୍ନା : ଲମ୍ବା ବାଳ ବଢ଼େଇବା ପାଇଁ ଯୋଜନା କରୁଛନ୍ତି ବୋଲି ? ଏଇଟା ତାଙ୍କ ଅଭିନୟକୁ ଆହୁରି ବଢ଼େଇ ଦବ।

ଅମୃତଲାଲ୍ : ଆଛା। ତା'ହେଲେ ଏଇଟା ତା' ବୁଦ୍ଧି ନା ତମର ?

ରତ୍ନା : ପ୍ରକୃତରେ ଏଇଟା ଗୁରୁଜୀଙ୍କର ହିଁ ପ୍ରସ୍ତାବ।

ଅମୃତଲାଲ୍ : ତାକୁ କହିଦବ, ଯଦି ସେ ତା' ବାଳ ଗୋଟେ ଇଞ୍ଚ ବି ଲମ୍ବା କରେ, ମୁଁ ତାକୁ ପୂରାପୁରି ଲଣ୍ଡା କରିଦେବି ଆଉ ତାକୁ ରାସ୍ତା ଉପରକୁ ଫୋପାଡ଼ି ଦେବି।

ରତ୍ନା : (ଟିକିଏ ଡ଼ରି ଯାଇ) ହଁ। ଏବେ ଯଦି ଆପଣଙ୍କର ଚା ଦରକାର ନାହିଁ, ତେବେ ମୁଁ ପୁଣି ନାଚ କ୍ଲାସ୍‌କୁ ଫେରିଯିବି।

ଅମୃତଲାଲ୍ : ଗତକାଲି ତୁମେ କୋଉଠି ଥିଲ ?

ରତ୍ନା : ସତରେ ମୁଁ ଜଲଦି ଫେରିଯାଏ....

ଅମୃତଲାଲ୍ : ସାରା ଦିନ କାଲି କୋଉଠି ଥିଲ ?

ରତ୍ନା : ମୁଁ ତ କହିଥିଲି ଆପଣଙ୍କୁ କୁଆଡ଼େ ଯାଇଥିଲି ବୋଲି।

ଅମୃତଲାଲ୍ : ହେଲେ କୁଆଡ଼େ ଯାଇଥିଲ ପ୍ରକୃତରେ ତୁମେ ?

ରତ୍ନା : ମୁଁ ବୁଝିପାରୁନି ଆପଣ କ'ଣ କହିବାକୁ ଚାହାନ୍ତି।

ଅମୃତଲାଲ୍ : ତୁମେ ମୋତେ କହିଥିଲ ଶିବ ମନ୍ଦିର ଯାଇଥିଲ ବୋଲି।

ରତ୍ନା : ହଁ। ସବୁ ସୋମବାର ତ ମୁଁ ଯାଏ।

ଅମୃତଲାଲ୍ : ସବୁ ସୋମବାର, ସତ ?

ରତ୍ନା : ହଁ।

ଅମୃତଲାଲ୍ : ସମୟ ବଦଳିନି। ଯେତେବେଳେ ଆମେ ନୂଆ ବାହା ହେଇଥିଲୁ, ଜୟର ମା' ଆଉ ମୁଁ ନିଜ ଇଚ୍ଛାରେ କୁଆଡ଼େ ଯିବାଲାଗି ଅନୁମତି ନ

ଥିଲା ଆମକୁ। ବିଶେଷକରି କୌଣସି ଚଳଚ୍ଚିତ୍ର ଦେଖିବାକୁ। ଅଥଚ ମନ୍ଦିର ଦର୍ଶନ ପାଇଁ ଆମକୁ ଅନୁମତି ଦିଆଯାଇଥିଲା। ତେଣୁ ଯେତେବେଳେ ଆମର ଚଳଚ୍ଚିତ୍ରଟିଏ ଦେଖିବାକୁ ଇଚ୍ଛା ହେଉଥିଲା, ଘରେ ସମସ୍ତଙ୍କୁ ଆମେ କହୁଥିଲୁ ମନ୍ଦିର ଦର୍ଶନ କରିବାକୁ ଯାଉଛୁ। କେହି ଆମକୁ ରୋକୁନଥିଲେ।

ରତ୍ନା : ମୋ'ର ଯଦି ଫିଲ୍ମ ଦେଖିବାକୁ ଇଚ୍ଛା ହେଇଥା'ନ୍ତା, ମୁଁ ଆପଣଙ୍କୁ ସତ କହିଥା'ନ୍ତି।

ଅମୃତଲାଲ୍ : ତା'ର କାରଣ ହେଉଛି, ତୁମେ ଜାଣିଛ, ମୁଁ ତୁମର ଫିଲ୍ମ ଦେଖିବାକୁ ବିରୋଧ କରି ନ ଥାନ୍ତି।

ରତ୍ନା : ଯା ହଉ, ମୁଁ ଆପଣଙ୍କୁ କହିଥାନ୍ତି।

ଅମୃତଲାଲ୍ : ତୁମେ ଦେଖିବାକୁ ଚାହୁଁଥିବା ଜିନିଷ ଯଦି ଫିଲ୍ମ ନ ହେଇଥାନ୍ତା, ତା'ହେଲେ ? ଯଦି ତୁମେ ଗୋଟେ ଜାଗା ଦେଖିବାକୁ ଚାହୁଁଥାଅ ଯୋଉଟା ମୁଁ ଚାହେଁ ନାହିଁ ତୁମେ ଦେଖ ବୋଲି, ତା' ହେଲେ ?

ରତ୍ନା : କ'ଣ ହେଇପାରେ ସେଇଟା ?

ଅମୃତଲାଲ୍ : ତୁମେ ଜାଣିଛ କୋଉଠି ସେଇଟା, କାରଣ ସବୁ ସୋମବାର ତୁମେ ସେଇଠାକୁ ହିଁ ଯାଉଛ ! (ରତ୍ନା କିଛି କୁହେନା)। ମୋର ସୌଭାଗ୍ୟ ଯେ ତୁମେ ସେଠାକୁ ଯାଉଥିବା କଥା ପଟେଲ ହିଁ ଦେଖିଲା। ତା' ମୁହଁ ବଂଦ କରିବା ଲାଗି ମୁଁ ତାକୁ ବିଶ୍ୱାସ କରିପାରେ। କେବଳ ଆମ ପରିବାର ମର୍ଯ୍ୟାଦା ଯୋଗୁଁ ସେ ମୋତେ ସବୁ କହିଲା।

ରତ୍ନା : ପରିବାରର ନାଁ ଖରାପ କଲା ଭଳି କିଛି କାମ ମୁଁ କରିନି।

ଅମୃତଲାଲ୍ : ହେଲେ ଲୋକେ ସବୁବେଳେ ଖରାପ କଥା ହିଁ ଧାରଣା କରନ୍ତି।

ରତ୍ନା : ଭଲ କଥା, ଆପଣ ପ୍ରଥମେ ସେଇ ଲୋକଗୁଡ଼ାଙ୍କ ଧାରଣାକୁ ପରିବର୍ତ୍ତନ କରିବା କାମ କରନ୍ତୁ।

ଅମୃତଲାଲ୍ : ମୋତେ ଉପଦେଶ ଦିଅନା ! ମୁଁ କ'ଣ କରିବି, ସେ କଥା ମୁଁ ଜାଣେ।

ରତ୍ନା : ବଡ଼ମାନଙ୍କୁ ସମ୍ମାନର ସହ କଥା ହେବା ପାଇଁ ମୋତେ ଶିକ୍ଷା

ଦିଆଯାଇଛି । ଯେହେତୁ ମୁଁ କୌଣସି ଭୁଲ୍ କାମ କରିନି, ମୁଁ କହିବିନି କାହିଁକି, ତା'ର କୌଣସି କାରଣ ହିଁ ନାହିଁ। ଚେନ୍ନି ଆମ୍ମା ହେଉଛି ମହୀଶୂର ଘରାନାର ସବୁଠୁ ପୁରୁଣା ତଥା ଜୀବିତ ବିଦୂଷୀ। ସିଏ ହିଁ ହେଉଛନ୍ତି ଏକମାତ୍ର ପୁରୁଣା ବ୍ୟକ୍ତିତ୍ୱ ଯାହାଙ୍କ ସହ ଯୋଗସୂତ୍ର ରଖାଯାଇ ପାରିବ। ତାଙ୍କ ଠାରୁ ଜ୍ଞାନ ଆହରଣ କରିବା ପାଇଁ ତାଙ୍କ ପାଖରେ ଗୋଟିଏ ହେଲେ ବି ଛାତ୍ର ନାହାନ୍ତି। ତାଙ୍କୁ ଏବେ ପଚସ୍ତରୀ ବର୍ଷ ଏବଂ ଏବେ ମୃତ୍ୟୁ ମୁଖରେ ସେ। ତାଙ୍କ ପାଖକୁ କେହି ଯାଆନ୍ତିନି। ନା ତାଙ୍କ ବଂଧୁବାନ୍ଧବ, ନା ତାଙ୍କ ପିଲାପିଲି। କେବେ କିମିତି ଗୋଟେ ଲେଖା ସଂପାଦିକ ଅଥବା ବିଦେଶୀ ଲୋକ ତାଙ୍କ ଦୁଆରେ ପହଂଚନ୍ତି। ହେଲେ ସେମାନେ କେହି କିଛି କରନ୍ତିନି ତାଙ୍କ ପାଇଁ, କେବଳ ଦୟାବଶତଃ କିଛି ପଇସା ଦେବାଛଡ଼ା, କିନ୍ତୁ ଏ ସବୁ ତାଙ୍କୁ ଖରାପ ଲାଗେନି। ଗରିବ କି ନିସଂଗ ହେଇଥିବାଟା ତାଙ୍କୁ ଆଦୌ ଖରାପ ଲାଗେନି। ଯେଉଁ କଥାଟା ତାଙ୍କୁ ସବୁଠୁ ଖରାପ ଲାଗେ, ତା' ହେଉଛି- ତାଙ୍କ ଯୌତୁକ ସମୟରେ କଳାର ପରିପ୍ରକାଶ ପାଇଁ ତାଙ୍କର ସ୍ୱାଧୀନତା ହିଁ ନ ଥିଲା। ପିଲାଦିନର ସମସ୍ତ ସମୟ ତାଙ୍କର ପ୍ରଶିକ୍ଷଣରେ ହିଁ କଟିଥିଲା। ସେଇ ପ୍ରଶିକ୍ଷଣ ଯାହାକୁ ସେ ଆଦୌ ଉପଯୋଗ କରି ପାରି ନ ଥିଲେ। ସବୁ କିଛି ନଷ୍ଟ ହେଇ ଯାଇଥିଲା ତାଙ୍କ ପାଇଁ। ଏବେ ସେ ମନ୍ଦିର ସାମ୍ନା ପାହାଚରେ ଫୁଲ ବିକ୍ରି କରି ସମୟ କାଟୁଛନ୍ତି। ଯେତେବେଳେ ସେ ଜାଣିଲେ ଯେ ମୁଁ ବି ନାଚ କରେ, ସେ ମୋତେ ଶୁଭେଚ୍ଛା ତ ଜଣେଇଲେ, ତା ସହ ତାଙ୍କ ଠାରୁ ଅଭିନୟ ଶିଖିବା ଲାଗି ଏକରକମ ମୋ ସହ ଯୁକ୍ତି କଲେ। ନିଜ ସ୍ମୃତିରେ ରହି ଯାଇଥିବା ନୃତ୍ୟର କିଛି ଭିନ୍ନ ମୁଦ୍ରା ବି ମୋତେ ଶିଖେଇବାକୁ ସେ ଆଗେଇ ଆସିଲେ। ଜଣେ ଯୋଗ୍ୟ ବ୍ୟକ୍ତିକୁ ସେ କଳା ଶିଖାଇବା ଯିମିତି ତାଙ୍କ ପାଇଁ ସବୁଠୁ ବଡ଼ କଥା ଥିଲା। ଏବଂ ସେ କଳା ଆହରଣ କରିବା ମୋ ପାଇଁ ବି ଏକ ବଡ଼ କଥା ଥିଲା। ତେଣୁ ସବୁ ସୋମବାର, ମୁଁ ମନ୍ଦିରକୁ ନ ଯାଇ ତାଙ୍କ ଘରକୁ ଯାଉଥିଲି।

ଅମୃତଲାଲ୍ : ଆଉ ତାଙ୍କ ଅଗଣାରେ ନୃତ୍ୟାଭ୍ୟାସ କରୁଥିଲୁ ଯାହାକୁ ରାସ୍ତାରେ ଯାଉଥିବା ସବୁ ଲୋକ ଦେଖୁଥିଲେ।

ରତ୍ନା : କେବଳ ସେଇମାନେ, ଯିଏ କେଉଁଠି ଘୁଙ୍ଗୁରର ଛମ୍ ଛମ୍ ଆବାଜ ଆସୁଥିଲା ବୋଲି ଉତ୍ସୁକ ହେଇ କାନ୍ଥ ଫାଙ୍କରୁ ଚାହୁଁଥିଲେ।

ଅମୃତଲାଲ୍ : ତୁମ ଘୁଙ୍ଗୁର। ତୁମ ଘୁଙ୍ଗୁରର ଶବ୍ଦ।

ରତ୍ନା : ହଁ।

ଅମୃତଲାଲ୍ : ତୁମ ଘୁଙ୍ଗୁରର ଶବ୍ଦ ଭାସି ଆସୁଥିଲେ ଗୋଟେ ବେଶ୍ୟାର ଅଗଣାରୁ।

ରତ୍ନା : ହଁ। ଶିବ ଆଉ ପାର୍ବତୀଙ୍କ ପବିତ୍ର ନୃତ୍ୟ ହିଁ ମୁଁ ନାଚୁଥିଲି।

ଅମୃତଲାଲ୍ : ଆଉ ତୁମେ ଭାବୁଥିଲ, ଯାହା କରୁଛ ଏକଦମ୍ ଠିକ୍?

ରତ୍ନା : ହଁ। ମୋ ସ୍ୱାମୀ ଜାଣନ୍ତି ମୁଁ କୁଆଡ଼େ ଯାଉଥିଲି। ତାଙ୍କର ଅନୁମତି ବି ଥିଲା ମୋ ପାଖରେ।

ଅମୃତଲାଲ୍ : ତୁମ ସ୍ୱାମୀ ହେଉଛନ୍ତି ମୋ ପୁଅ। ଏବଂ ତୁମେ ଦୁହେଁ ମୋ ପାଖରେ ରହୁଚ। ଅନ୍ତତଃ ମୋ ଅନୁମତି ଲୋଡ଼ି ପାରିଥା'ନ୍ତ ତୁମେ।

ରତ୍ନା : ଆପଣ ସେଥିଲାଗି ମୋତେ ଅନୁମତି ଦେଇନଥାନ୍ତେ।

ଅମୃତଲାଲ୍ : ଏବଂ କେବେ ବି ଦେବିନି।

ରତ୍ନା : ଯଦି ମୋତେ ତାଙ୍କ ଘରକୁ ଯିବା ଲାଗି ଅନୁମତି ଦେବେନି, ତାହେଲେ ସେ ଏଠାକୁ ଆସିବା ଲାଗି କହିବି।

ଅମୃତଲାଲ୍ : ନା, ଏ ଘରକୁ କେବେ ବି ନୁହେଁ।

ରତ୍ନା : ଗୋଟେ ବୁଢ଼ୀ ଲୋକ ଆପଣଙ୍କ ଘରକୁ ଆସିବାରେ ଏତେ ଆପତ୍ତି କାହିଁକି ଆପଣଙ୍କର? ତାଙ୍କ ଅଗଣାରେ ନାଚିବାଟାକୁ ଆପଣ ଖରାପ ଭାବୁଛନ୍ତି।

ଅମୃତଲାଲ୍ : ତୁମେ କରି ପାରିବନି। ବାସ୍। ତମକୁ କୌଣସି କାରଣ ବତାଇବା ଜରୁରି ନୁହେଁ ମୋ ପାଇଁ।

ରତ୍ନା : ଗୋଟେ କଳାକୁ ମୁଁ ଶିଖିବା, ଆପଣ ବନ୍ଦ୍ କରିପାରିବେନି!

ଅମୃତଲାଲ୍ : ଏଇଟା ଏକଦମ୍ ଶେଷ କଥା ତୁମେ ସେ ସ୍ତ୍ରୀ ଲୋକକୁ କେବେ ଆଉ

ଭେଟିବା ମୁଁ ଚାହେନି। ବାସ୍, ଏଇ କଥା ହିଁ ମୁଁ କହିବାକୁ ଚାହେଁ। ତୁମେ ଏବେ ଯାଇପାର। ମୁଁ ଦୁଃଖିତ ଯେ ତୁମକୁ ଘୁଙ୍ଗୁର ଝଣଝଣ କରିବାରୁ ମୁଁ ବିରତ କରିଛି। ମୋ'ର କେବଳ ଏତିକି ଅନୁରୋଧ ଯେ ତୁମେ ଟିକେ ଜଲ୍‌ଦି ନାଚ ଶେଷ କରିଦିଅ ଏବଂ ଦେଖ ଯେମିତି ମୋ ଅତିଥିମାନେ ଆସିବା ଆଗରୁ ତୁମ ଗୁରୁଜୀ ଏ ଜାଗା ଛାଡ଼ି ଦିଅନ୍ତି। ଭଗବାନ କରନ୍ତି ସେମାନେ ଯିମିତି ପରସ୍ପର ମୁହାଁମୁହିଁ ନ ହୁଅନ୍ତୁ।

ଜୟରାଜ : (ଟ୍ରେ ଧରି ପ୍ରବେଶ କରେ) ସେମାନେ କଫି ପିଇ ସାରିଲେଣି। ତୁମେ ସେମାନଙ୍କୁ କାହିଁକି ମିଠା ଦେଲନି ? ତୁମେ ଜାଣିଛ, ଅପମାନିତ ହେବାଟାକୁ ସେମାନେ କିମିତି ଭଲ ପାଆନ୍ତି। (ଅମୃତଲାଲ୍‌ଙ୍କ ପ୍ରତି) ମୋତେ ସଂଗୀତଜ୍ଞମାନଙ୍କୁ ଟଙ୍କା ଦବାକୁ ହବ।

ଲତା : ଜାଣି ଖୁସି ଲାଗିଲା ଯେ ସେମାନେ ନିଜକୁ ଅନ୍ତତଃ ଅପମାନିତ ମନେ କରୁଛନ୍ତି। ଆମେ ଏବେ ତାଙ୍କୁ ଯେତେବେଳେ ପଳେଇବା ପାଇଁ କହିବା ଯା'ଠୁ ଅଧିକ କିଛି ଖରାପ ସେମାନେ ଭାବିବେନି। ମୋତେ ଟ୍ରେଟା ଦିଅ।

ଜୟରାଜ : ରୋଷେଇ ଘରକୁ ମୁଁ ନେଇ ଯାଉଛି। ଏବେ ସେ ଚାହୁଁଛନ୍ତି ତୁମେ 'ପଦମ୍'ଟା ଅନ୍ତତଃ ଅଭ୍ୟାସ କର। (ଅମୃତଲାଲଙ୍କ ପ୍ରତି) ଯେତିକି ବୁଢ଼ା ହେଉଛନ୍ତି, ସେତିକି ମସ୍ତିଷ୍କ ବିକୃତି ଘଟୁଛି ସେମାନଙ୍କର। (ରତ୍ନାଙ୍କ ପ୍ରତି) ସେମାନଙ୍କୁ ଏବେ ପଳେଇଯିବାକୁ କହୁଛି ? (ଅମୃତଲାଲଙ୍କ ପ୍ରତି) ଚାରିଟଙ୍କା। (ରୋଷେଇଶାଳକୁ ଚାଲିଯା'ନ୍ତି)

ଅମୃତଲାଲ୍ : (ରତ୍ନାଙ୍କ ପ୍ରତି) ତୁମ ଉପରେ ଛାଡ଼ିଦେଲି ଏ କଥା ଯଦି ଦଶ ମିନିଟ୍ ଭିତରେ ସେମାନେ ନ ଯା'ନ୍ତି ତେବେ ବାଧ୍ୟ ହେଇ ସେମାନଙ୍କୁ ମୁଁ ଅନୁରୋଧ କରିବି ଚାଲିଯିବା ପାଇଁ।

ରତ୍ନା : ବ୍ୟସ୍ତ ହୁଅନ୍ତୁନି। ମୁଁ କିଛି ନା କିଛି ବାହାନା କରି ଦେବି।

ଅମୃତଲାଲ୍ : ବହୁତ ବଢ଼ିଆ। ଆଉ ତୁମେ ଯଦି ମୋତେ କଥା ଦିଅ ଯେ ସେ ସ୍ତ୍ରୀ ଲୋକ ପାଖକୁ ଆଉ ଯିବ ନାହିଁ, ତା'ହେଲେ ତୁମର ଯିବା ଆସିବାଟାକୁ

ନିୟନ୍ତ୍ରଣ କରିବା କଥା। ମୁଁ ଚିନ୍ତା କରିବିନି। (ରତ୍ନା ତାଙ୍କୁ ଚାହିଁ ରହେ ଓ ହଠାତ୍ ଜୋର୍‌ରେ ହସେ) ଏଥିରେ ହସିବାର କ'ଣ ଅଛି ?

ରତ୍ନା : ଆପଣଙ୍କୁ ଦେଖିଲେ ମୋତେ ପ୍ରକୃତରେ ଦୁଃଖ ଲାଗୁଛି !

ଅମୃତଲାଲ୍ : ଏଇଟା ଗୋଟେ ଆଶ୍ଚର୍ଯ୍ୟଜନକ କଥା ଯେ ମୋ ପାଇଁ ତୁମେ ଦୁଃଖିତ। ଏମିତି ହୋ...ହୋ... ହସି ହସି ଦୁଃଖ ପ୍ରକାଶ କରୁଛୁ ମୋ ପାଇଁ।

ରତ୍ନା : ସତରେ ମୁଁ ଦୁଃଖିତ।

ଅମୃତଲାଲ୍ : କାହିଁକି ?

ରତ୍ନା : ଆସନ୍ତାକାଲି, ଜୟରାଜ ଆଉ ଏକ ନୂଆ ପ୍ରକାରର ନାଚ ଶିଖୁଛନ୍ତି, କୁଚିପୁଡ଼ି।

ଅମୃତଲାଲ୍ : ତା'ହେଲେ ?

ରତ୍ନା : (ଖୁବ୍ ଗମ୍ଭୀର ହେଇ) କୁଚିପୁଡ଼ି ନୃତ୍ୟରେ ପୁରୁଷଙ୍କୁ ନାରୀର ପୋଷାକ ପିନ୍ଧିବାକୁ ପଡ଼େ ! (ଖୁବ୍ ଜୋର୍‌ରେ ହସେ ଏବଂ ନାଚ ହଲ୍ ଆଡ଼କୁ ପ୍ରସ୍ଥାନ) (ରତ୍ନା ମୂକ ସ୍ୱରରେ ଗୁରୁଙ୍କ ସହ କଥାବାର୍ତ୍ତା କରୁଥାଏ। ଜୟରାଜ ପ୍ରବେଶ କରେ ଏବଂ ନାଚ ହଲ୍ ଆଡ଼କୁ ଯାଉ ଯାଉ ଅଟକି ଯାଏ।)

ଜୟରାଜ : ଏବେ ମୋତେ ଟଙ୍କା ଦେଇ ପାରିବ ?

ଅମୃତଲାଲ୍ : ହଁ, ମୁଁ ଏବେ ଟଙ୍କା ଦେଇ ପାରିବି।

ଜୟରାଜ : ଚାରିଟଙ୍କା।

ଅମୃତଲାଲ୍ : ହଁ ସେମାନଙ୍କୁ ତୁ ଏବେ ଚାରିଟଙ୍କା ଦେଇ ପାରୁ ଆଉ କେବେ ବି ଏ ଘରେ ପାଦ ନ ପକେଇବାକୁ କହିଦେ।

(ଟିକିଏ ଅଟକିଯାଇ)

ଜୟରାଜ : ତୁମେ ସେମିତି କରିପାରିବନି !

ଅମୃତଲାଲ୍ : ମୁଁ ଦୁଃଖିତ, ବାବୁରେ।

ଜୟରାଜ : ତୁମେ କିନ୍ତୁ ମୋତେ କଥା ଦେଇଥିଲ।

ଅମୃତଲାଲ୍ : ବର୍ଷକ ତଳେ ଦେଇଥିଲି ।

ଜୟରାଜ : ମୋ ପ୍ରବୃତ୍ତିକୁ ଆଗେଇ ନେବା ଲାଗି ମୋତେ କଥା ଦେଇଥିଲ ତୁମେ ।

ଅମୃତଲାଲ୍ : ହଁ ମୁଁ କଥା ଦେଇଥିଲି, ଯେତେବେଳେ ତୁ ପିଲା ଥିଲୁ ଏବଂ ନାଚିବା ଗୋଟେ ପ୍ରବୃତ୍ତି ଭିତରେ ଥିଲା । ଏବେ ବୟସ୍କ ହେବାକୁ ଚେଷ୍ଟାକର, ଜୟରାଜ ।

ଜୟରାଜ : ମୁଁ ବୟସ୍କ ହେବାକୁ ଚାହେନା ! ମୁଁ ଯାହା କରିବାକୁ ଚାହେଁ, ତୁମେ ତାକୁ ବଂଦ୍ କରିପାରିବନି ।

ଅମୃତଲାଲ୍ : ଯେତେଦିନ ଯାଏ ତୁମେ ମୋ ଲାଳନ ପାଳନରେ ଅଛ...

(ରନ୍ନାର ପ୍ରବେଶ । ସତେ ଯେପରି ସେ ଗୁରୁଜୀ ଏବଂ ସଂଗୀତଜ୍ଞମାନଙ୍କୁ ପାଛୋଟି ଦୁଆର ଆଡ଼କୁ ନେଇ ଯାଉଛି । ସେମାନେ ଯିବାବେଳେ ଦୁଆର ମୁହଁରେ ସେ ଯୋଡ଼ହସ୍ତ ହେଇ ବିଦାୟ ନେଉଛି ।)

ଜୟରାଜ : ଗୁରୁଜୀ ! କାହିଁକି ?... (ସେମାନେ ଚାଲି ଯାଉଥିବା ଦେଖନ୍ତି ଏବଂ ପରେ ରନ୍ନା ପ୍ରତି) ସେମାନେ ପଳେଇଲେ କାହିଁକି ? ବାପା କିଛି କହିଲେ... ?

ରନ୍ନା : ଠିକ୍ ଅଛି । ସେମାନେ ଅପମାନିତ ମନେ କରିନାହାନ୍ତି ନିଜକୁ । ମୁଁ କହିଲି ଆମେ ଦୁହେଁ ଥକି ଯାଇଛୁ ଆଉ ସେ କହିଲେ ତାଙ୍କର ଯିବା ସମୟ ହେଇ ଗଲେଣି । ପୁଣି କାଲି ସେ ଆସିବେ ।

ଅମୃତଲାଲ୍ : ଏଠିକି ସେ କାଲି ଆସିବେ ନାହିଁ । ତାଙ୍କ ପାଖକୁ ମୁଁ ଦୁଃଖ-ପ୍ରକାଶ କରି ଗୋଟେ ଚିଠି ନିଜେ ପଠେଇବି ।

ଜୟରାଜ : (ଅମୃତଲାଲ୍‌ଙ୍କ ପ୍ରତି) ଯେତେଦିନ ଯାଏ ଆମେ ତୁମ ଲାଳନ ପାଳନରେ ଅଛୁ... (ଶୋଇବା ଘର ଆଡ଼କୁ ମୁହାଁଏ)

ରନ୍ନା : କୁଆଡ଼େ ତୁମେ... ?

ଜୟରାଜ : ଯେତେଦିନ ଯାଏ ଆମେ ତାଙ୍କ ଲାଳନପାଳନରେ ଅଛୁ ! (ପ୍ରସ୍ଥାନ)

ରନ୍ନା : କ'ଣ ହେଲା, ପଚାରିକି ମୁଁ ଆପଣଙ୍କୁ ବ୍ୟସ୍ତ କରିବିନି । (ସେଇ ପୁରୁଣା କାଳିଆ ଫୋନ୍ ପାଖକୁ ଅମୃତଲାଲ୍ ଯାଆନ୍ତି ଏବଂ ନମ୍ବର ଘୁରାନ୍ତି)

ଅମୃତଲାଲ୍ : (ଫୋନ୍ ଧରି) ହ୍ୟାଲୋ ? ପଟେଲ ? ହଁ, ତୁମଠୁ ଗୋଟେ ସାହାଯ୍ୟ ଚାହୁଁଛି... ମୋ ବୋହୂ ସହ ସେ ଯେଉଁ ମହିଳାଟିକୁ ତୁମେ ଦେଖିଥିଲ। ହଁ, ସେଇ ସ୍ତ୍ରୀଲୋକ। ଗୋଟେ ଡାକ୍ତର ପଠାଇ ପାରିବ ତାକୁ ଦେଖିବା ପାଇଁ ? ମୁଁ ଶୁଣିଲି ତା'ର ଦେହ ଆଦୌ ଭଲ ନାହିଁ...ହଁ...ଆରେ ପଟେଲ ? ମୋ ତରଫରୁ ତାକୁ ପାଞ୍ଚଶହ ଟଙ୍କା ଅନୁଦାନ ଦେଇଦବ। ମୁଁ ତୁମ ପାଖକୁ ସେ ପଇସା ପଠେଇ ଦେବି। ପ୍ଲିଜ୍। ଋଣୀ ରହିବି ତୁମ ପାଖରେ ମୁଁ... ଧନ୍ୟବାଦ୍। (ଫୋନ୍ ରଖି ଦିଅନ୍ତି)

ରତ୍ନା : ଏଇଟା ଆପଣଙ୍କର ବଡ଼ ଉଦାରତା।

ଅମୃତଲାଲ୍ : ତାଙ୍କ ପାଖରୁ ତାଙ୍କର ଏକମାତ୍ର ଛାତ୍ରୀଙ୍କୁ ବଂଚିତ କରୁଥିବାରୁ, ଏଇଟା ଥିଲା ଗୋଟେ ପାରିତୋଷ। (ଜୟରାଜ ଗୋଟେ ଶାଢ଼ୀରେ ଗୁଡ଼ାଏ କପଡ଼ା ଗଣ୍ଠିଲି କରି ଧରି ପ୍ରବେଶ କରନ୍ତି।)

ଜୟରାଜ : (ରତ୍ନାଙ୍କ ପ୍ରତି) ଆସ। ତୁମର କେତେଗୁଡ଼ାଏ କପଡ଼ା ମୁଁ ଏକାଠି କରି ଦେଇଛି। ଆମେ କୁଆଡ଼େ ?

ଜୟରାଜ : ସେ କଥା ଆମେ ପରେ ସ୍ଥିର କରିବା। (ରତ୍ନା ହାତକୁ ଗଣ୍ଠିଲିଟା ବଢ଼େଇଦିଏ) ଆଗ, ଏଠୁ ପଳେଇ ଚାଲ।

ରତ୍ନା : ହେଲେ ଜୟ, ତୁମେ ସବୁ କିଛି ନେଇନ ଏଠୁ...

ଜୟରାଜ : ବ୍ୟସ୍ତ ହୁଅନା। (ରତ୍ନାର କାନ୍ଧରେ ହାତ ପକାନ୍ତି ଏବଂ ଦୁଆର ଆଡ଼କୁ ଆଗାନ୍ତି।)

ରତ୍ନା : ଅନ୍ତତଃ ଆମର ସବୁ ଜିନିଷ ନେଇ ଯାଇଥା'ନ୍ତେ। କାଲିସକାଳେ ପଳେଇ ପାରିଥାନ୍ତେ ଏଠୁ।

ଜୟରାଜ : ଆମର କୌଣସି ଚାକଚକ୍ୟ ଜିନିଷ ଲୋଡ଼ା ନାହିଁ। (ପଛକୁ ଘୂରିଯା'ନ୍ତି ଏବଂ ଉଦାର ସ୍ୱରରେ କହିବାକୁ ଆରମ୍ଭ କରନ୍ତି) ଏବେଠୁ ଆମେ ଆଉ ଆପଣଙ୍କ ଲାଳନପାଳନରେ ନାହୁଁ। ଆଉ କେବେ ବି ରହିବୁ ନାହିଁ। କେବେ ନୁହେଁ। (ସେ ପ୍ରସ୍ଥାନ କରନ୍ତି ଏବଂ ଅଶାନ୍ତ ହେଇ ଯାଇଥିବା ରତ୍ନା ତାଙ୍କୁ ଅନୁଧାବନ କରନ୍ତି।)

ରତ୍ନା : (ପ୍ରସ୍ଥାନ କରୁ କରୁ) ଜୟ ! ଜୟରାଜ ! (ଯେଉଁ ମୁହୂର୍ତ୍ତରେ ରତ୍ନା ପ୍ରସ୍ଥାନ କରନ୍ତି, ବଗିଚାଟି ହଠାତ୍ ଏବେକାର ଡ୍ରଇଂରୁମ୍ ପାଲଟି ଯାଏ।

ଶାଲ୍‌ଟି କାଢ଼ି ଦେବା ପରେ ଅମୃତଲାଲ୍ ପାଲଟି ଯା'ନ୍ତି ବୟସ୍କ ଜୟରାଜ। ବୟସ୍କ ରତ୍ନାଙ୍କ ସ୍ୱର ସେଇଠୁ ଆରମ୍ଭ ହୁଏ ଯେଉଁଠି ଅଳ୍ପ ବୟସ୍କା ରତ୍ନାଙ୍କ ସ୍ୱର ଶେଷ ହେଇଥିଲା।)

ରତ୍ନା : (ମଞ୍ଚ ଭିତରୁ) ଜୟରାଜ ! (ପ୍ରବେଶ କରନ୍ତି) ଜୟରାଜ ! ଓଃ ! ଏବେ ବି ତୁମେ ଏଇଠି ଅଛ ? ଲତାର କୋଠରୀରେ ମୁଁ ତୁମକୁ ଦେଖିଲିନି, ଭାବିଲି କୁଆଡ଼େ ଗଲ। ମୋର ଧାରଣା, ବହୁତ ବେଶି ପିଇନ ତୁମେ। ଶୋଇବା ଘରକୁ ଆସ। ଲତାକୁ ତା' କୋଠରିକୁ ଯିବା ପାଇଁ କହି ଦେଇଛି। ଏପଟ ସେପଟ ବହୁତ କଡ଼ ଲେଉଟଉଛି। ମୁଁ ଶୋଇ ପାରୁନି ଆଦୌ। ଗୋଟାଏ କମ୍ବଳରେ ତା' ସହ ବି ଶୋଇ ଦେଉନି, ନିଦ ବାଉଳାରେ ପୂରା କମ୍ବଳଟାକୁ ଟାଣି ଦେଉଛି ତା' ଆଡ଼କୁ। ମୋ'ର ଖୁବ୍ ଦୟା ଆସୁଛି ବିଶ୍ୱାସ ପାଇଁ। (ହାଇ ମାରନ୍ତି) ଆସ। (ଧୀରେ ଧୀରେ ଯା'ନ୍ତି ଜୟରାଜ, ପଛେ ପଛେ ରତ୍ନା। ପଛେ ପଛେ ଶୁଣା ଯାଉଥାଏ ରତ୍ନାଙ୍କ ସ୍ୱର) ବୁଝିଲ ଜୟ, ଶେଷାଦ୍ରୀକୁ ସାହାଯ୍ୟ ପାଇବା ଲାଗି ଚନ୍ଦ୍ରକଳାକୁ ଅନୁରୋଧ କରିବା କଥାଟା କାହିଁକି ମୋ ମନକୁ ପାଉନି। ଲତାର ନାଚକୁ ନଷ୍ଟଭ୍ରଷ୍ଟ କରି ଦେବା ଲାଗି ସେମାନେ ଚକ୍ରାନ୍ତ କରି ପାରନ୍ତି। ଶେଷାଦ୍ରୀ ହୁଏତ ଭୁଲ୍ ତାଳ ଦେଇ ପାରେ ଲତା ନାଚୁଥିବା ବେଳେ। ଲୋକେ ଜାଣି ପାରନ୍ତିନି କାହାର ଦୋଷ, ହେଲେ ନର୍ତ୍ତକୀକୁ ହିଁ ନିନ୍ଦା କରନ୍ତି। ଥରେ ଏମିତି ଅଘଟଣ ହେଇଥିଲା ଯେବେ ନନ୍ଦିନୀ ତାର ନାଚ ପାଇଁ ସରସ୍ୱତୀର ଭାଇକୁ ନେଇଥିଲା... (ଅନ୍ଧାର)

## ଦ୍ୱିତୀୟ ଅଙ୍କ

(୧୯୪୦ ପାଖାପାଖି ହବ। ଯୁବକ ଜୟରାଜ ଆଉ ଯୁବତୀ ରତ୍ନା ଧୈର୍ଯ୍ୟର ସହ ଠିଆ ହେଇଥା'ନ୍ତି ଯେତେବେଳେ ଅମୃତଲାଲ୍ ତାଙ୍କୁ ତାଗିଦ୍ କରୁଥାନ୍ତି। କଫି ଟେବୁଲ୍ ଉପରେ ଗୋଟେ କାଗଜ ରଖା ଯାଇଥାଏ। ଜୟରାଜ ଓ ରତ୍ନା ଘର ଛାଡ଼ିବାର ଦୁଇଦିନ। ପରର ଘଟଣା। ଏକଥା ସ୍ୱଷ୍ଟ ଯେ ସେମାନେ ଫେରି ଆସିଛନ୍ତି, ପରାଜିତ ହେଇ।)

ଅମୃତଲାଲ୍ : ଠିକ୍ ଅଛି। ତୁମ ଦୁହିଁଙ୍କୁ ଅନୁମତି ଦେଇ ଦେବି। ଅବଶ୍ୟ ମୁଁ ଅନୁଭବ କରୁଛି ଯେ ତୁମେ ଯାହା ସବୁ ଏଯାବତ୍ ନ କରିଛ, ତାକୁ ବଂଦ୍ କରିବା ଉଦ୍ଦେଶ୍ୟରେ ନୁହେଁ, ବରଂ ନିହାତି ଆବଶ୍ୟକତା ଦୃଷ୍ଟିରୁ ତୁମେ ଦୁହେଁ ଲେଉଟି ଆସିଛ ମୋ ପାଖକୁ। ମୁଁ କିଛି ମନେ କରୁନି। ସେ ସବୁ ଭାବି ମୁଁ ଖୁସି ହେଉନି, ହେଲେ... ମୁଁ କିଛି ମନେ କରୁନି। ତୋତେ ଏକଥା ମନେ ପକେଇ ଦେଇ ମୁଁ ବହୁତ ଖୁସି ବି ହଉନାହିଁ ଯେ ତୁ କେବେ ବି ଏ ଘରକୁ ଫେରିବୁ ନାହିଁ ବୋଲି ପ୍ରତିଜ୍ଞା କରି ଚାଲି ଯାଇଥିଲୁ। ନା, ସେସବୁ ତୋତେ ମନେ ପକେଇ ଦେବାକୁ ମୁଁ ଚାହେଁନି। ଏସବୁ ଠାରୁ ମୁଁ ଅନେକ ଉର୍ଦ୍ଧ୍ୱରେ। କିନ୍ତୁ ତୋ'ର ଏ ଅହେତୁକ ନୀରବତା, କେଉଁଠି ନା କେଉଁଠି ମନ ଭିତରେ କଣ୍ଟା ଭଳି ଗଳି ଯାଉଛି ମୋ'ର। ନୀରବତା ହିଁ ଘୃଣା ସୃଷ୍ଟି କରେ। ମୋ'ର ଉଦ୍ଦେଶ୍ୟ କେବେ ବି ନ ଥିଲା ଯେ ତୁ ମୋତେ ଘୃଣା କର। ବାପା-

ମା' ତାଙ୍କ ପିଲାଙ୍କ ଠାରୁ ସେଇଆ ଆଶା କରନ୍ତି ? ତେଣୁ ମୁଁ ମୋ ବିଚାରରେ ପରିବର୍ତ୍ତନ କରିଛି । ତୋତେ ନାଚ କରିବାକୁ ମୁଁ ଅନୁମତି ଦେବି । ଯଦି ନାଚ କରି ତୁ ତୋ ପେଟ ପୋଷି ପାରିବୁ, ତେବେ ମୁଁ ସବୁଠୁ ବେଶି ଖୁସି ହେବି । ଆଉ ଯଦି ତୁ ମୋ ପାଖରେ ପଇସା ପାଇଁ ହାତ ପତାଉ ମୁଁ ଆଦୌ ତୋତେ ମନା କରିବିନି, ହେଲେ ସେଇଟା ନିଶ୍ଚୟ କଷ୍ଟ ଦବ ମୋତେ । ଜଣେ ଚାଲାକ୍ ଲୋକ ପରି ମୁଁ ଠିକ୍ ଜାଗାମାନଙ୍କରେ ମୋ ଟଙ୍କା ସବୁ ବିନିଯୋଗ କରିଛି । କିନ୍ତୁ ଏ କଥା ତୁ ଭାବନା ଯେ ମୋ'ର ସମସ୍ତ ଧନ ଉପରେ ତୋ'ର ଅଧିକାର ଅଛି । ତୁ ମୋ ଲାଇବ୍ରେରିକୁ ନାଚ ଶିଖିବା ପାଇଁ ବ୍ୟବହାର କରି ପାରୁ । ତୋ ନୃତ୍ୟ ଗୁରୁ ବି ସପ୍ତାହରେ ଦୁଇଥର ସକାଳବେଳା ଆସି ପାରନ୍ତି । ମୋ'ର ଧାରଣା ଯାହା ସବୁ ମୋ'ର କହିବାର ଥିଲା ମୁଁ କହି ସାରିଛି ବର୍ତ୍ତମାନ । (କୌଣସି ଜବାବ୍ ନାହିଁ) ଠିକ୍ ଯାହା ସବୁ କହିବାକୁ ଚାହୁଁଥିଲି, କହିଛି ନା ?

ଜୟରାଜ : ହଁ । ଏକ୍‌ଦମ୍ ଠିକ୍ ଠିକ୍ ବୁଝିଛି । (ପାହାଚ ଉପରକୁ ଚଢ଼ିବାକୁ ଯାଏ)

ଅମୃତଲାଲ୍ : ହଁ, ଜୟରାଜ । (ଜୟରାଜ ଅଟକି ଯା'ନ୍ତି) ବାଳ ଆଉ ଲମ୍ବା ବଢ଼ାଇବା ଦରକାର ନାହିଁ । (ଜୟରାଜ ଚାଲିଯା'ନ୍ତି । ଏଥର ରନ୍ନା ପ୍ରତି) ଆଉ ତୁମର ଅନ୍ୟ କାହା ପାଖକୁ ନୃତ୍ୟ ଶିଖିବାକୁ ଯିବା ଦରକାର ନାହିଁ । ବୁଝିଲ ?

ରନ୍ନା : ଆପଣ ବହୁତ ଦୟାଳୁ ।

ଅମୃତଲାଲ୍ : ତୁମ ଦୁହିଁଙ୍କୁ ଖୁସି ଦେଖିବାକୁ ମୁଁ ଚାହେଁ ।

ରନ୍ନା : (ତାଚ୍ଛଲ୍ୟ) ଆମେ ଦୁହେଁ ତ ଖୁସିରେ ଅଛୁ ।

ଅମୃତଲାଲ୍ : ପ୍ରକୃତରେ ଖୁସିରେ ଅଛ ?

ରନ୍ନା : ଆପଣ ଜାଣି ପାରୁ ନାହାନ୍ତି ? (ଟିକିଏ ଅଟକି ଯିବା)

ଅମୃତଲାଲ୍ : ତୁମେ ଜାଣିଛ, ମଣିଷର ଅସଲ ସୁଖ କେଉଁଠି ଥାଏ ?

ରନ୍ନା : ନା ।

ଅମୃତଲାଲ୍ : ମଣିଷ ହେବାରେ।

ରନ୍ନା : ଗୋଟେ ବଡ଼କଥା ଭଳି ଶୁଣା ଯାଉଛି। ଯା'ର ମାନେ କ'ଣ?

ଅମୃତଲାଲ : ଜୟରାଜ ଜାଣେ କି ତା' ଜୀବନର ସୁଖ କ'ଣ?

ରନ୍ନା : ସେ ଜାଣନ୍ତି। କିନ୍ତୁ ମୁଁ ଭାବୁନି, ଆପଣ ଯାହା ଭାବୁଛନ୍ତି ଜୟରାଜର ତା' ସହ ମେଳ ଅଛି ବୋଲି।

ଅମୃତଲାଲ୍ : ହଁ। ମୁଁ ଜାଣେ ସେ କଥା। ତାହା ହିଁ ତ ମୋ ଦୁଃଖର କାରଣ।

ରନ୍ନା : ହଉ, ଆପଣ ଦୁଃଖିତ, ସେଥିଲାଗି ମୁଁ ବି ଦୁଃଖିତ। ହେଲେ ଯା' ବ୍ୟତୀତ ମୁଁ ଅଧିକ କିଛି କରି ପାରିବିନି। (ଟିକିଏ ରହି)

ଅମୃତଲାଲ୍ : ବହୁତ କିଛି କରି ପାରିବ ତୁମେ।

ରନ୍ନା : ଆପଣ କ'ଣ କହିବାକୁ ଚାହୁଁଛନ୍ତି, ମୁଁ ଭାବୁନି ଯେ ମୁଁ ବୁଝିପାରୁଛି।

ଅମୃତଲାଲ୍ : ମୁଁ ଦୁନିଆ ଦେଖିଛି। ଗୋଟେ ଚାଲାକ୍ ସ୍ତ୍ରୀ ଲୋକ କିଏ, ଦେଖିବା ମାତ୍ରେ ମୁଁ ଜାଣି ପାରିବି।

ରନ୍ନା : ଧନ୍ୟବାଦ, ମୁଁ ଭାବୁଛି।

ଅମୃତଲାଲ୍ : କିମିତି ଲାଗୁଛି ତୁମକୁ? କିମିତି ଲାଗୁଛି ତୁମକୁ ନିଜ ସ୍ୱାମୀଙ୍କ ସହ ନୃତ୍ୟ କଲାବେଳେ? ଯେତେବେଳେ ତୁମେ ତାକୁ ବେଶ ଭୂଷା, ରଂଗବେରଂଗରେ ଦେଖୁଚ, କିମିତି ଲାଗୁଛି ତୁମକୁ?

ରନ୍ନା : ଆପଣ ବୋଧେ ଭୁଲି ଯାଇଛନ୍ତି। ମୁଁ ତାଙ୍କୁ ବାହା ହେଇଛି ଏଇଥି ପାଇଁ ଯେ ସେ ଜଣେ ନର୍ତ୍ତକ।

ଅମୃତଲାଲ : ହୁଏତ ଏ କଥା ସେ ବିଶ୍ୱାସ କରିପାରେ। ହେଲେ ମୁଁ ସେ କଥା ଆଦୌ ଭାବୁନି।

ରନ୍ନା : ଏଇଟା ହିଁ ସତ।

ଅମୃତଲାଲ୍ : ଏଇଆ?

ରନ୍ନା : ହଁ।

ଅମୃତଲାଲ୍ : ନା ତୁମେ ତାକୁ ବାହା ହେଇଛ ଏଇଥିପାଇଁ। ସେ ତୁମକୁ ନାଚ କରିବାକୁ ଦବ ?

ରତ୍ନା : ହଁ, ସେ କଥା ବି।

ଅମୃତଲାଲ୍ : ପ୍ରଥମ ଅପେକ୍ଷା ଆର କଥାଟା ବେଶି ସତ।

ରତ୍ନା : (ଟିକିଏ ବିରକ୍ତ ହେଇ) ଠିକ୍ ଅଛି... ହଁ।

ଅମୃତଲାଲ୍ : ହୁଉଁ। ଆଉ ତୁମେ ତ ଖୁବ୍ ବୁଦ୍ଧିମତୀ, ଏବେ ତୁମେ ଜାଣି ସାରିବଣି ତୁମକୁ ନାଚିବା ଲାଗି ଅନୁମତି ଦେବା ମୋ ହାତରେ, ତା ହାତରେ ନୁହେଁ।

ରତ୍ନା : ଆପଣ ଏକଥା ଖୁବ୍ ସ୍ପଷ୍ଟ କରି ସାରିଛନ୍ତି।

ଅମୃତଲାଲ୍ : ବ୍ୟସ୍ତ ହୁଅନା। ତୁମକୁ ରୋକିବା ମୋ ଉଦ୍ଦେଶ୍ୟ ନୁହେଁ। ତୁମକୁ ନାଚିବାକୁ ମୁଁ ଅନୁମତି ଦେବି।

ରତ୍ନା : ଆଉ ଜୟରାଜ ? ତାଙ୍କୁ ନୃତ୍ୟ କରିବାରୁ ନିବୃତ୍ତ କରିବାକୁ ଚାହାନ୍ତି ଆପଣ, ଏଇଆ ନା ? ଆପଣ ଯାହା ବି ସବୁ କହିଲେ।

ଅମୃତଲାଲ୍ : ପୁରୁଷମାନଙ୍କ ସାମ୍ରାଜ୍ୟରେ ନାରୀକୁ କୁହାଯାଇ ପାରେ 'ପ୍ରଗତିଶୀଳା'। ହେଲେ ନାରୀମାନଙ୍କ ସାମ୍ରାଜ୍ୟରେ ପୁରୁଷ ହିଁ ଏକ 'ଦୟନୀୟ' ପ୍ରାଣୀ।

ରତ୍ନା : ହେଇପାରେ, ଆମ ପାଖରେ ଖୁବ୍ ବେଶି ପ୍ରଗତିଶୀଳ ଚିନ୍ତା ଧାରାର ଅଭାବ ରହିଚି।

ଅମୃତଲାଲ୍ : ସେଇଟା ପ୍ରଗତିଶୀଳ ଚିନ୍ତାଧାରା ନୁହଁ। ବରଂ ସେଇଟା ରୁଗ୍ଣ ମାନସିକତା।

ରତ୍ନା : ତା'ହେଲେ ଏବେ ଏବେ ଆପଣ ତାଙ୍କୁ ନାଚି ପାରିବେ ବୋଲି କହୁଥିଲେ କାହିଁକି ?

ଅମୃତଲାଲ୍ : ମତେ କୁହ। ଜଣେ ନର୍ତ୍ତକ ହିସାବରେ କେତେ ଭଲ ସେ ?

ରତ୍ନା : ଭଲ ନାଚିପାରନ୍ତି ସେ।

ଅମୃତଲାଲ୍ : ଭଲ ? ବିଚକ୍ଷଣ ନୁହଁ ? ଆଉ ତୁମେ ?

ରତ୍ନା : ଆଚ୍ଛା, ଯଦି ମୁଁ ଟିକିଏ ଅଧିକ ଅଭ୍ୟାସ କରେ.... ତେବେ....

ଅମୃତଲାଲ୍ : ତା'ହେଲେ ତୁମେ ପ୍ରସିଦ୍ଧ ହେଇଯିବ ?

ରତ୍ନା : ହେଇପାରେ ମୁଁ।

ଅମୃତଲାଲ୍ : ଠିକ୍ ଏଇଆ ଭାବିଥିଲି ମୁଁ। ସମୟର ଅପଚୟ କରୁଛି ସେ। ବିଚରା ପିଲାଟା।

ରତ୍ନା : ପିଲା ନୁହଁନ୍ତି ସେ।

ଅମୃତଲାଲ୍ : ଏଇଟା ତ ଏବେ ତମ ହାତରେ।

ରତ୍ନା : କ'ଣ ?

ଅମୃତଲାଲ୍ : ତାକୁ ଅନ୍ତତଃ ମୁଁ ଲୋକଟେ କରିବାରେ ସାହାଯ୍ୟ କର ମତେ। ତାକୁ ବଡ଼ କରିବାରେ ମୋତେ ତୁମେ ସାହାରା ଦିଅ।

ରତ୍ନା : କିମିତି ? (ଅଟକି ଯା'ନ୍ତି ଟିକିଏ)

ଅମୃତଲାଲ୍ : ଖୁବ୍ କଠିନ କଥା, କିମିତି ବୁଝେଇବି ମୁଁ। ତୁମ ଉପରେ ଛାଡ଼ି ଦେଉଛି। ମୋତେ ଏତିକି ଅନ୍ତତଃ ସାହାଯ୍ୟ କର, ମୁଁ ତୁମକୁ କେବେ ବି ନାଚ କରିବାରୁ ନିବୃତ୍ତ କରିବିନି। ମୁଁ ଜାଣେ ଏଥିପାଇଁ ହୁଏତ ସମୟ ଲାଗି ପାରେ, ମାତ୍ର ଏ କାମ କରିବାକୁ ହିଁ ପଡ଼ିବ।

ରତ୍ନା : ମୁଁ ଚେଷ୍ଟା କରିବି।

ଅମୃତଲାଲ୍ : ତା'ଠୁଁ ଆଉ ଟିକେ ଅଧିକା କରିବାକୁ ହବ।

ରତ୍ନା : (ଅଧିକ ସ୍ୱଷ୍ଟ ହେଇ) ଠିକ୍ ଅଛି। (ରୋଷେଇ ଘରକୁ ଆଗଉଥା'ନ୍ତି। ଅମୃତଲାଲ୍ ବସି ପଡ଼ନ୍ତି। ରତ୍ନା ହଠାତ୍ ଅଟକି ଯା'ନ୍ତି ଓ ବୁଲିପଡ଼ନ୍ତି।) ଆଚ୍ଛା ସେ ଯଦି ନାଚିବା ବଂଦ୍ କରି ଦିଅନ୍ତି। ତା'ପରେ ଆପଣ ତାଙ୍କ ସହ କ'ଣ କରିବେ ?

ଅମୃତଲାଲ୍ : ତୁମ ଲାଗି ତାକୁ ଯୋଗ୍ୟ ବନେଇବି। (ରତ୍ନାଙ୍କ ପ୍ରସ୍ଥାନ। ଅମୃତଲାଲ୍ ଖବରକାଗଜ ଉଠାଇ ନିଅନ୍ତି ଓ ବୟସ୍କ ଜୟରାଜ ପାଲଟିଯା'ନ୍ତି। ଆଲୋକ ଉଜ୍ଜ୍ୱଳ ହେଇଉଠେ। ବଗିଚା ପରିଣତ ହେଇଯାଏ ଡ୍ରଇଂରୁମ୍‌ରେ, ଯେଉଁଠି ଟେଲିଫୋନ୍ ଘନ ଘନ ବାଜୁଥାଏ।)

ଜୟରାଜ : ରତ୍ନା ! (ବୟସ୍କା ରତ୍ନା ରୋଷେଇଶାଳରୁ ଆସନ୍ତି ଓ ଡ୍ରଇଂରୁମ୍‌ରେ ପ୍ରବେଶ କରନ୍ତି ।)

ରତ୍ନା : ସକାଳଟାରୁ ଖାଲି ଫୋନ୍... ଆଉ ଫୋନ୍। ଯଦି ଏଇଟା ପୁଣି ସେଇ ମୁଥେୟା ହେଇ ଥାଏ ନା, ତାକୁ ମୁଁ... (ଫୋନ୍‌ର ଉତ୍ତର ଦିଅନ୍ତି) ହ୍ୟାଲୋ... ଓ...ହ୍ୟାଲୋ ଡଃ ଗୌଡ଼ା, ଆପଣ ଫୋନ୍ କରିଥିବାରୁ ଅନେକ ଧନ୍ୟବାଦ। ଫୁଲ ପାଇଁ ବି ବହୁତ ବହୁତ ଧନ୍ୟବାଦ। ଲତା ଏତେ ଖୁସି ହେଇ ଯାଇଛି ଯେ... ହଁ...ହଁ। ଧନ୍ୟବାଦ... ଆରେ... ଧନ୍ୟବାଦ୍। ହଁ, ମୁଁ ତାକୁ କହିଦେବି। ଏ କଥା ଶୁଣି ସେ ତ ଖୁସିରେ ଶିହିରି ଉଠିବ... କାହିଁକି ? ହଁ ! କାହିଁକି ସେ ଶିହିରି ଉଠିବନି ? ଆପଣଙ୍କ ପାଖରୁ କୃତଜ୍ଞତା....ନା ନା ଆପଣ ମନ୍ତ୍ରୀ ଅଛନ୍ତି ବୋଲି କହୁନି, ହେଲେ ନୃତ୍ୟ ସଂପର୍କରେ ଆପଣଙ୍କର ଏତେ ଗଭୀର ପ୍ରବେଶ ଏବଂ ଏତେ ଟିକିନିଖି ଜ୍ଞାନ... ଯଦି ଆପଣଙ୍କ ଭଳି ବ୍ୟକ୍ତି ତାକୁ ପ୍ରଶଂସା କରନ୍ତି, ତା'ହେଲେ ସେ ଖୁସୀରେ ଶିହିରି ଉଠିବ ହିଁ ଉଠିବ। ଆଉ ଯଦି ଅନ୍ୟ କେହି ନୁହଁ, ଭାରତର ରାଷ୍ଟ୍ରପତି ଠିଆ ହେଇ ତାକୁ ଉଚ୍ଛ୍ୱସିତ ସଂବର୍ଦ୍ଧନା ଦିଅନ୍ତି... ଅବଶ୍ୟ ଯିମିତି ଲତା ତିଲ୍ଲନା ଶେଷ କରିଛି, ସେ ତାଙ୍କ ଆସନରୁ ଉଠ ଠିଆ ହେଲେ ଏବଂ କରତାଳି ଦେଲେ।

ଜୟରାଜ : (ଖବର କାଗଜରୁ ମୁହଁ ଫେରାଇ) ପାଇଖାନା ଯିବା ପାଇଁ ସେ ତରତର ହେଉଥିଲେ।

ରତ୍ନା : (ହାତ ହଲେଇ ଜୟରାଜଙ୍କୁ ଚୁପ୍ ହେବା ଲାଗି ଇସାରା କରୁଥିଲେ) ସେ ଯାହା ହେଉ ଏତେ କଷ୍ଟ କରି ଆପଣ ଟେଲିଫୋନ୍ କଲେ ଖୁବ୍ ଖୁସିର କଥା, ପୁଣି ସେଇ ସମୟରେ ଯେତେବେଳେ ଆପଣ କାନାଡ଼ାରେ ଭାରତ ଉତ୍ସବ ଆୟୋଜନ କରିବା ଲାଗି ଏତେ ବ୍ୟସ୍ତ ଅଛନ୍ତି। ଲତାକୁ ମୁଁ ଏବେ ଉଠେଇ ଦିଅନ୍ତି, ହେଲେ ସେ ବହୁତ ଥକି ଯାଇଛି। ଆଉ ଗତକାଲିର ନୃତ୍ୟ ପ୍ରଦର୍ଶନ ପରେ ତା'ର ବିଶ୍ରାମ ବି ବହୁତ ଆବଶ୍ୟକ ହେଇ ଯାଇଛି। ତଥାପି, ଆପଣ ଯଦି ଚାହାନ୍ତି, ମୁଁ ତାକୁ ମୁଁ ତାକୁ ଡାକି ଦେବି... ତା'ହେଲେ ସେ ଆପଣଙ୍କୁ ଟେଲିଫୋନ୍ କରିବାକୁ କହିବି କି ? ନା, ନା। ଏଥିରେ ଅସୁବିଧା କିଛି ନାହିଁ। ଆପଣଙ୍କୁ ସେ ଟେଲିଫୋନ୍ କରିବାକୁ କହିବି...

ଜୟରାଜ : ଅନ୍ତତଃ ଯେହେତୁ ଆପଣ କାନାଡ଼ାରେ ଭାରତ ଉତ୍ସବ ଆୟୋଜନ କରିବାକୁ ବ୍ୟସ୍ତ ଅଛନ୍ତି ।

ରତ୍ନା : ଯଦି ଏ ଉତ୍ସବ ଆୟୋଜନରେ ଆପଣ ଆମଠାରୁ କିଛି ସାହାଯ୍ୟ ଚାହୁଁଛନ୍ତି, ତେବେ ଆମକୁ କହିବାକୁ କୁଣ୍ଠା କରନ୍ତୁନି । ଜୟରାଜ ଆଉ ମୁଁ ଖୁସି ହେବୁ। ଅନ୍ତତଃ, ଏତେବର୍ଷ ଧରି ଆମେ ପରସ୍ପରକୁ ଜାଣୁ, ଆମର ତ ଗୋଟାଏ ପାରିବାରିକ....

ଜୟରାଜ : (ଅଧୈର୍ଯ୍ୟ ହେଇଯା'ନ୍ତି) ବହୁତ ବେଶି ହେଇଯାଉଛି ରତ୍ନା...

ରତ୍ନା : (ଚୁପ୍ ରହିବା ଲାଗି ହାତରେ ଇସାରା କରେ) ଆଚ୍ଛା ଗୋଟେ କଥା କହୁଛି, ଆପଣଙ୍କର ଚୟନ ସମିତି ଗଠନ କଲେଣି କି ? ଏଥର ତ ଆପଣଙ୍କୁ ବହୁତ ନର୍ତ୍ତକୀ ନବାକୁ ପଡ଼ିବ । ଆରଥର ଯେମିତି ଫ୍ରାନ୍ସ୍‌ରେ ଗଡ଼ବଡ଼ ହେଲା (ହସନ୍ତି), ଆଚ୍ଛା, କରି ସାରିଲେଣି ? ଆମେ ଜାଣିଥିବା କେହି ଲୋକ ? କିଏ ?... (ଆହତ ହେଇଯା'ନ୍ତି) କିଏ ?... ଚନ୍ଦ୍ରକଳା ? (ବହୁତ କ୍ଷୀପ୍ର ସ୍ୱରରେ) ହଁ, ହଁ, ବହୁତ ଭଲ ନର୍ତ୍ତକୀ... କୋଡ଼ିଏ ବର୍ଷ ତଳେ। ଅବଶ୍ୟ ମୁଁ ଖୁସି ଯେ ତାଙ୍କ ଝିଅ ମାଳା ପାଇଁ...।

ଜୟରାଜ : ନା !

ରତ୍ନା : ଅବଶ୍ୟ, ଚୟନ ସମିତିରେ ମା' ଥିଲେ ଝିଅ ପାଇଁ ଅବଶ୍ୟ ସୁବିଧା ହେଇଯାଏ ଆରେ, ଚନ୍ଦ୍ରକଳା ଦେବୀ ପକ୍ଷପାତ କରିବେ, ସେ କଥା ମୁଁ କହୁନି । ଗୋଟେ ସାମାଜିକ ନୈତିକତା ବୋଲି କିଛି ଅଛି ନା....

ଜୟରାଜ : ଅଛି କି ସେମିତି କିଛି ?

ରତ୍ନା : ହେଲେ ଶେଷରେ ତ ଆପଣ ଯାହା କହିବେ ସେଇଆ ହବ, ସେଇଆ ନା ? ଓ, ଖୁବ୍ ଭଲ କଥା.... ଓ ମୁଁ ଦୁଃଖିତ, ଏତେ ବ୍ୟସ୍ତତା ଭିତରେ ଆପଣଙ୍କୁ ହଇରାଣ କଲି। ଅନେକ ଅନେକ ଧନ୍ୟବାଦ, ବାଏ... (ଫୋନ୍ ରଖି ଦିଅନ୍ତି)

ଜୟରାଜ : ଏତେ ଆଉ ତେଲ ମାରନି । ତୁମ କଥାବାର୍ତ୍ତାରୁ ଏଇଟା ଅନ୍ତତଃ ସ୍ପଷ୍ଟ ବାରିହେଇ ପଡୁଛି ।

ରତ୍ନା : ମୁଁ ତେଲ ମାରିନି। ସେ ତାଙ୍କ ତରଫରୁ ଟେଲିଫୋନ୍ କରିଥିଲେ (ଶୋଇବା ଘର ଆଡ଼କୁ ଯାଆନ୍ତି)

ଜୟରାଜ : ଠିକ୍ କଥା ଏକଦମ୍। ଯଦି ସେ ନିଜ ଆଡୁ ଡାକିଛନ୍ତି, ତା'ହେଲେ ସେ ଲତାର ନାଚକୁ ଭଲ ପାଇଛନ୍ତି। ତାଙ୍କୁ ତମ ତରଫରୁ ବାଧ କରିବାର ଆବଶ୍ୟକତା ହିଁ ନାହିଁ....

ରତ୍ନା : (ପାଟିକରି ଡାକିବା) ଲତା! (ଜୟରାଜଙ୍କ ପ୍ରତି) ତାଙ୍କ ସହ କଥା ହବା ଅଥଚ ତୁମେ ଭାବୁଚ ମୁଁ ତାଙ୍କୁ ବାଧ କରୁଛି, ଚନ୍ଦ୍ରକଳା ବୋଧେ ତାଙ୍କ କୋଳରେ ଏବେ ବସିଛି!

ଜୟରାଜ : ନା, ସେ ବସି ନ ଥିବ କେବେ ବି।

ରତ୍ନା : ହୁଁ! ଏଇଆ ତୁମେ ଭାବୁଚ?

ଜୟରାଜ : ସେଇଟା ଏତେ ମୋଟି ଆଉ ଯେ'ତ ଏତେ ପତଳା।

ରତ୍ନା : (ଚିତ୍କାର କରି ଡାକିବା) ଲତା!

ଲତା : (ପର୍ଦ୍ଦା ପଛରୁ) ହଁ ମାମା, ଉଠିଗଲିଣି ମୁଁ। ପାଞ୍ଚ ମିନିଟ୍ ଛାଡ଼ିଦେ।

ଜୟରାଜ : ତା' ବିଷୟରେ ଯାହା ସବୁ ଖବରକାଗଜରେ ବାହାରିଛି, ସେ ପଢ଼ିବନି?

ରତ୍ନା : ତା'ର ଭାରି ଭୟ ଯେ ତା' ବିରୁଦ୍ଧରେ ହିଁ ବାହାରିଥିବ।

ଜୟରାଜ : କିନ୍ତୁ ଖୁବ୍ ଭଲ ବାହାରିଛି ତା' ବିଷୟରେ। ତୁମେ ତାକୁ ଏକଥା କହିନ?

ରତ୍ନା : ତାକୁ ଟିକିଏ ବିସ୍ମିତ କରିବାକୁ ମୋ'ର ଇଚ୍ଛା। ତଳକୁ ଆସୁ। ତମର ଆଉ କଫି ଦରକାର କି?

ଜୟରାଜ : ଠିକ୍ ଅଛି। କିନ୍ତୁ ବେଶି ମିଠା ନୁହେଁ।

ରତ୍ନା : ୟ୍ୟା' ପରେ ତୁମେ ଖବରକାଗଜ ଦୋକାନକୁ ଯିବ ଆଉ ସେଠୁ 'ହେରାଲଡ୍' ଏବଂ 'ଟାଇମ୍ସ' କିଣି ଆଣିବ।

ଜୟରାଜ : କେବଳ 'ଏକ୍ସପ୍ରେସ୍' ପରଦିନ ସକାଳେ ହିଁ ରିଭ୍ୟୁ କାଢ଼େ, ଆଉ ସବୁ ଖବରକାଗଜ ଆଉ ଗୋଟେ ଦିନ ଅଧିକା ନିଅନ୍ତି।

ରତ୍ନା : ଏଥର କିନ୍ତୁ ତା'ହବନି। ସେମାନେ ସମସ୍ତେ ମତେ କଥା ଦେଇଛନ୍ତି। ନବରାତ୍ରୀ ଉତ୍ସବରେ ଏଥର ସି.ଭି. ସୁରୀଙ୍କୁ ମୁଁ ମୁଖ୍ୟ ଅତିଥି କରିବି ବୋଲି କଥା ଦେଇଛି... (ରୋଷେଇ ଘର ଆଡ଼କୁ ଚାଲିଯା'ନ୍ତି)

ଜୟରାଜ : (ରତ୍ନାଙ୍କୁ ଲକ୍ଷ୍ୟ କରି ଉଚ୍ଚ ସ୍ୱରରେ କହନ୍ତି) ସେଇଦିନ ରାତିରେ ହିଁ ତାଙ୍କୁ ରିଭ୍ୟୁ ଲେଖି ଦେବାକୁ ପଡ଼ିବ। ହେଲେ ଅଧିକାଂଶଙ୍କ ପାଖରେ ସମୟ ନ ଥାଏ। ସମ୍ଭବ କେବଳ, ଯଦି ସେମାନେ ନୃତ୍ୟ ପ୍ରଦର୍ଶନ ପୂର୍ବରୁ ହିଁ ରିଭ୍ୟୁ ଲେଖନ୍ତି, ଯେଉଁଟା ସେମାନେ ବେଳେବେଳେ କରିଥା'ନ୍ତି। (ହଠାତ୍ ଫୋନ୍ ବାଜି ଉଠେ) ରତ୍ନା !

ରତ୍ନା : (ରତ୍ନା ପ୍ରବେଶ କରନ୍ତି ଏବଂ ଟେଲିଫୋନ୍ ଆଡ଼କୁ ଅଗ୍ରସର ହୁଅନ୍ତି) ହଁ, ହଁ। ସେଇଠି ବସି ବସି ଖବରକାଗଜ ପଢୁଥାଅ ଯେତେବେଳେ ସାରା ସଂସାରର ଲୋକେ ଆମ ଦୁଆର କବାଟ ବାଡ଼େଇ ଚାଲିଛନ୍ତି। ହ୍ୟାଲୋ... (ଖୁବ୍ ମିଠାଳିଆ ସ୍ୱରରେ) ଓ ହ୍ୟାଲୋ, ଶେଷାଦ୍ରୀ ନିଦ ଠିକ୍ ହେଇଛି ? ହଁ ଆମେ ଏକ୍ସ୍‌ପ୍ରେସ୍ ପଢ଼ିଛୁ। ସି.ଭି. ସୁରୀ ଏମିତି ଏକ ବିଚକ୍ଷଣ ସମାଲୋଚକ, ସତ କହିବାକୁ ଗଲେ ତାଙ୍କର ଏ ବିଷୟ ଗଭୀର ପ୍ରବେଶ ରହିଛି। କ'ଣ ପାଇଁ, ଶେଷ ? ନା। ପ୍ରକୃତରେ ମୁଁ ଜାଣିପାରୁନି ତମେ କ୍ଷମା ମାଗୁଛ କାହିଁକି ?... ନା... ନା... ଶେଷ... ଆରେ ଏଇଟା ଏମିତି କିଛି ନୁହେଁ। କ'ଣ ହେଇଗଲା ଯଦି ଆରମ୍ଭରୁ ହିଁ ଭୁଲ ତାଳରେ ତମେ ବଜେଇବାକୁ ଲାଗିଲ ? ସାଂଗେ ସାଂଗେ ମୁଁ ତ ତୁମକୁ ବଂଦ୍ କଲି ସେଥିରୁ, କରିଥିଲି ନା ? ଛାଡ଼। ବଡ଼ ବଡ଼ ଲୋକ ବି ଏମିତି ବେଳେ ବେଳେ କରନ୍ତି। ଚନ୍ଦ୍ରକଳା କିମିତି ଅଛି ? ମୋ ତରଫରୁ ତାକୁ ଶୁଭେଚ୍ଛା ଜଣାଇ ଦବ... ଓ, ତୁମେ ତା'ହେଲେ ଜାଣିନ ? ସେ ତୁମକୁ କହିଥିବ ବୋଲି ମୁଁ ଭାବିଥିଲି... କାନାଡାକୁ ଯାଉଥିବା ନୃତ୍ୟଦଳ ଚୟନ ସମିତିରେ ତା' ନାଁ ରଖିଛନ୍ତି ଦେବରାଜ ଗୌଡ଼ା। ତା ପାଇଁ ଆଉ ମାଳା ପାଇଁ ସତରେ ମୁଁ ଏତେ ଖୁସି। ମୁଁ ଗୋଟେ ଭିତିରି କଥା କହୁଛି, ଦେବରାଜ ମୋତେ ଫୋନ୍ କରି ପଚାରିଥିଲା ମୁଁ। ଏ ଚୟନ ସମିତିରେ ରହିବାକୁ ଚାହୁଁଛି କି ବୋଲି। ତୁମେ ଜାଣିଛ, ପ୍ରାୟ ସବୁ ନର୍ତ୍ତକ ନର୍ତ୍ତକୀଙ୍କୁ ମୁଁ ବ୍ୟକ୍ତିଗତ ଭାବେ ଜାଣେ, ମୋ ପାଇଁ ଗୋଟେ ସଂକଟ ପରିସ୍ଥିତି ସୃଷ୍ଟି କରିଥାନ୍ତା କାହାକୁ

ଚୟନ କରିବି ବୋଲି। ହେଲେ ମୁଁ ତାଙ୍କୁ ସଂଗେ ସଂଗେ କହିଲି, ସମୟ ଅପଚୟ ନ କରି ସେ ତୁରନ୍ତ ଚନ୍ଦ୍ରକଳାକୁ ପଚାରନ୍ତୁ। ସେ ହିଁ ଯଥାର୍ଥ ବ୍ୟକ୍ତି ବୋଲି ମୁଁ ତାଙ୍କୁ କହିଥିଲି।... ଆରେ ଏ ସବୁ କିଛି ନୁହେଁ! ଯାହା ହେଲେ ବି, କ'ଣ ପାଇଁ ଆମେ ବଂଧୁ ପରସ୍ପରର ?.... କ'ଣ ? ହଁ, ହଁ, ନିଶ୍ଚୟ... ଆଦୌ ବ୍ୟସ୍ତ ହୁଅନା, ତୁମେ କିମିତି ସେ ଦଳରେ ଯିବ, ସେ କଥା ମୁଁ ଦେଖିବି। ଆଦୌ ବ୍ୟସ୍ତ ହୁଅନା ଶେଷ। ଏଇ ବର୍ଷକ ଭିତରେ ତୁମେ କାନାଡ଼ାରେ ହିଁ ଥିବ... ହଁ... ହଁ। ତୁମେ ମୋତେ ଏବେ କ୍ଷମା କରିଦିଅ, କ୍ଷୀର ବୋଧେ ଉତୁରିଗଲା। ଫୋନ୍ କରିଥିବାରୁ ଅନେକ ଧନ୍ୟବାଦ। ତୁମେ ଖୁବ୍ ଭଲ ଲୋକ... ହଁ, ମୁଁ ତାଙ୍କୁ କହିଦେବି। (ଫୋନ୍ ରଖି ଦିଅନ୍ତି) ଦିନେ ନା ଦିନେ ଯା' ଭିତରେ ମୁଁ ତା' ମୃଦଙ୍ଗଟାକୁ ମୋ ମୁଣ୍ଡରେ କଚାଡ଼ି ଦେବି! (ରୋଷେଇ ଘର ଆଡ଼କୁ ଅଗ୍ରସର ହୁଅନ୍ତି) ଇଡଲି ଚଳିବ ନା ଦୋସା ବନେଇବି ଜଳଖିଆ ଲାଗି ? (କୌଣସି ଉତ୍ତରକୁ ଅପେକ୍ଷା ନ କରି ଚାଲିଯା'ନ୍ତି) (ଜୟରାଜ ଖବରକାଗଜ ପଢ଼ିବା ପରେ ଚଉତାଇ ରଖିଦିଅନ୍ତି। ବିଶ୍ୱାସ ପ୍ରବେଶ କରେ। ତା' ହାତରେ ଦୁଇ ଦୁଇଟା ଖବରକାଗଜ।)

ବିଶ୍ୱାସ : ୟ୍ୟା'କୁ ଆପଣ ପଢ଼ିଲେଣି କି ? 'ହେରାଲ୍ଡ' ଆଉ 'ଟାଇମ୍ସ'! ଖୁବ୍ ସୁନ୍ଦର ରିଭିଉଜ୍!

ଜୟରାଜ : ତୁମେ ଏକ୍ସପ୍ରେସ୍ ପଢ଼ିଲକି ?

ବିଶ୍ୱାସ : ନା, ମୋତେ ଦେଖିବାକୁ ଦିଅନ୍ତୁ! (ସେ ଖୁବ୍ ଉତ୍ସୁକତାର ସହ 'ଏକ୍ସପ୍ରେସ୍' ନେବା ବେଳେ ଜୟରାଜ ଠିକ୍ ସେଇ ଉତ୍ସାହ ସହ 'ହେରାଲ୍ଡ' ଏବଂ 'ଟାଇମ୍ସ' କାଗଜ ନିଅନ୍ତି। ଦୁହେଁ ଖବରକାଗଜ ପୃଷ୍ଠା ଓଲଟାଇ ଚାଲନ୍ତି।)

ଜୟରାଜ : (ପଢ଼ିବା) ଲତା ପାରେଖ- ନୃତ୍ୟୋତ୍ସବର ତାରକା।

ବିଶ୍ୱାସ : (ପଢ଼ିବା) ସବୁଠି କେବଳ ଲତା! ବାଃ!

ଜୟରାଜ : (ଆଉ ଗୋଟେ ଖବରକାଗଜ ପଢ଼ି ଚାଲନ୍ତି) 'ଅନ୍ୟ ସମସ୍ତଙ୍କୁ ଲତା ପଛରେ ପକାଇ ଦିଏ!' ଅନ୍ତତଃ ସେ ପଢ଼ିବା ଯାଏ ତ ଅପେକ୍ଷା

କର ! (ବିଶ୍ୱାସ ଖବରକାଗଜ ପଢୁଥାଏ ଯେତେବେଳେ ଜୟରାଜ ଶୋଇବା ଘର ପାଖକୁ ଯାଇ ଡ଼ାକ ଛାଡ଼ନ୍ତି ଲତାକୁ ।

ଜୟରାଜ : ଲତା ! ଜଲଦି ଆସ ଆଉ ତୋ' ବିଷୟରେ କ'ଣ ସବୁ ବାହାରିଛି, ପଢ଼ ।

ଲତା : (ଭିତରୁ) ଆସୁଚି ମୁଁ !

ଜୟରାଜ : ବିଶ୍ୱାସ ବି ଆସିଛି ।

ଲତା : (ଭିତରୁ) ଓ, ତାହେଲେ ମୋତେ ଦୁଇ ମିନିଟ ଦିଅ ।

ବିଶ୍ୱାସ : (ପଢୁଥାଏ) – ଚମତ୍କାର ଚେହେରା ଆଉ ଢ଼ଳଢ଼ଳ ମୁହଁର ବରଦାନ ପାଇଥିବା ନୃତ୍ୟାଙ୍ଗନା ଲତା ପାରିଖ, ତାଳ ଆଉ ଲୟ ସହ ଯେଉଁ ଅପୂର୍ବ ମୁଦ୍ରା ପରିବେଷଣ କଲେ ତାହା....

ଜୟରାଜ : (ରୋଷେଇ ଘର ଆଡ଼କୁ ଲକ୍ଷ୍ୟ କରି) ବିଶ୍ୱାସ ଆସିଛି ।

ରତ୍ନା : (ଭିତରୁ) ଆଉ ଗୋଟେ କପ୍ ତିଆରି କରୁଛି ମୁଁ । ଜଳଖିଆ ଖାଇଛନି ନା ନାହିଁ ତାଙ୍କୁ ପଚାର ।

ବିଶ୍ୱାସ : (ପଢୁଥାଏ) ବୟସରେ ଏତେ କମ୍ ଥାଇ ବି ତାଙ୍କ ନୃତ୍ୟ ସହ ଅଭିନୟ ପ୍ରକୃତରେ ନୃତ୍ୟ ଜଗତରେ କେବଳ ବିସ୍ମୟ ସୃଷ୍ଟି କରି ନାହିଁ । ବରଂ ତାହା ଅପୂର୍ବ ଓ ଅତୁଳନୀୟ । ନୃତ୍ୟ ପ୍ରବୀଣା ମା' ରତ୍ନା ଓ ପିତା ଜୟରାଜ ପାରିଖ୍‌ଙ୍କ ତତ୍ତ୍ୱାବଧାନରେ ସେ ଏକ ପ୍ରଖ୍ୟାତ ନୃତ୍ୟାଙ୍ଗନା ହେବାରେ ସମର୍ଥ ହେଇଛନ୍ତି । ଇଏ ହେଉଛନ୍ତି ଏଭଳି ଜଣେ ନୃତ୍ୟାଙ୍ଗନା ଯିଏ ଭାରତନାଟ୍ୟମ୍‌ର ଆକାଶରେ ଏକ ଉଜ୍ଜ୍ୱଳ ତାରକା ଭାବେ ସର୍ବଦା ଉଦ୍‌ଭାସିତ ହୋଇ ରହିବେ ।

ଜୟରାଜ : (ପଢୁ ପଢୁ) ତାଙ୍କ ଅଙ୍ଗଶୁଦ୍ଧି ଏବଂ ତାଳ ପ୍ରତି ନିୟନ୍ତ୍ରଣ ଅନେକ ନୃତ୍ୟାଙ୍ଗନା ଠାରୁ ବେଶ୍ ସୁଦୃଢ଼, ଏପରିକି ଚନ୍ଦ୍ରକଳା ଦେବୀଙ୍କ ଠାରୁ ବି ତାଙ୍କ ନୃତ୍ୟ ଅଧିକ ନିପୁଣ । ସତ କହିବାକୁ ଗଲେ, ନିଜର ତ୍ୟାଗ ଆଉ ସାଧନା ବଳରେ ସେ ମହାନ୍ ଶିଳ୍ପୀ ବାଳ ସରସ୍ୱତୀ ତଥା ରୁକ୍ମିଣୀ ଦେବୀଙ୍କ ସମକକ୍ଷ ହେଇ ପାରିବେ । ବୋଲି ନିସନ୍ଦେହରେ କୁହାଯାଇ ପାରେ ।

ବିଶ୍ୱାସ : ପ୍ରକୃତରେ ଖୁବ୍ ଭଲ ଲେଖା ହେଇଛି। ପ୍ରକୃତରେ.... ଅବଶ୍ୟ ମୁଁ ଜାଣେନି ଏ 'ଅଙ୍ଗଶୁଦ୍ଧି' କ'ଣ, ହେଲେ ଖୁବ୍ ଚମତ୍କାର ଲାଗୁଛି।

ଜୟରାଜ : ବହୁତ ପ୍ରତିଭାଶାଳୀ ସେ ! ସେଇ କଥା ତ ଲେଖା ହେଇଛି। ପ୍ରକୃତରେ ଖୁବ୍ ପ୍ରତିଭାଶାଳୀ ଆମ ଝିଅ।

ବିଶ୍ୱାସ : 'ଭାରତନାଟ୍ୟମ୍ ଆକାଶର ଏକ ଉଜ୍ଜ୍ୱଳ ତାରକା।'

ଜୟରାଜ : ଏଇ ସମାଲୋଚକମାନେ ସବୁବେଳେ ତାଙ୍କ ମତ ବଦଳାଇଥା'ନ୍ତି।

ବିଶ୍ୱାସ : କିଏ ପଚାରେ ? ସେମାନେ ତାକୁ ଭଲ ପାଇଲେ, ତା'ର ଭୁରି ଭୁରି ପ୍ରଶଂସା କଲେ !

ରତ୍ନା : (କଫିସହ ପ୍ରବେଶକରନ୍ତି) ତୁମେ ଦେଖ ! ଏଇ ସମାଲୋଚକମାନେ.... (ଲତା ପ୍ରବେଶ କରେ। ଦୁଇଜଣଯାକ ପୁରୁଷ ଠିଆ ହେଇଯା'ନ୍ତି ଏବଂ ତାଳି ମାରି ସ୍ୱାଗତ କରନ୍ତି ଲତାର)

ଜୟରାଜ : 'ଏ ଦଶକର ପ୍ରମୁଖ ଆବିଷ୍କାର !' (ଲତା ପରିହାସପୂର୍ବକ ନମସ୍କାର କରେ। ରତ୍ନା ଟେବୁଲ୍ ଉପରେ ଟ୍ରେ ରଖନ୍ତି ଏବଂ ବାଧ୍ୟତାମୂଳକ ହସ ହସନ୍ତି)

ଲତା : ଧନ୍ୟବାଦ। ସମସ୍ତଙ୍କୁ ଧନ୍ୟବାଦ।

ରତ୍ନା : ଅଭିନନ୍ଦନ, ଲତା। (ପରସ୍ପରକୁ ଆଲିଙ୍ଗନ କରନ୍ତି)। ଏବେ ତୁ ବସ, ଆଉ ଆରାମରେ କଫି ପିଅ।

ଜୟରାଜ : ଆଉ ତୋ ଉପରେ ବାହାରିଥିବା ଖବର ସବୁ ସତ। ଏଠି, ଏଠି, ଆଉ ଏଠି। (ଲତା ଆଉ ଜୟରାଜ ବସନ୍ତି)

ରତ୍ନା : ବିଶ୍ୱାସ, ବ୍ରେକଫାଷ୍ଟ ପର୍ଯ୍ୟନ୍ତ ତୁମେ ରହୁଚ ତ।

ବିଶ୍ୱାସ : ନା ନା। ଧନ୍ୟବାଦ। ମୁଁ ଖାଇକରି ଆସିଛି।

ରତ୍ନା : ଆରେ କେବଳ ଇଡ୍‌ଲି। ତୁମେ ଗୋଟେ ଦି'ଟା ତ ରଖିବ ଅନ୍ତତଃ। (ବିଶ୍ୱାସ ଅଶ୍ୱସ୍ତିକର ଭାବେ ହସେ। ରତ୍ନା ରୋଷେଇ ଘରକୁ ଚାଲିଯା'ନ୍ତି) (ବିଶ୍ୱାସ ବସି ପଡ଼େ)

ଲତା : (ତଥାପି ପଡୁଥାଏ) ମୋର ବିଶ୍ୱାସ ହେଉନି !

ଜୟରାଜ : ତୋ'ର ବିଶ୍ୱାସ କରିବା ଉଚିତ। ଏବେ ତୁ ବିଖ୍ୟାତ ହେଇ ସାରିଛୁ।

ଲତା : ଏସବୁ ମାମାର ପ୍ରଚେଷ୍ଟା କେବଳ। ମୋତେ ଆଗକୁ ବଢ଼େଇବାରେ।

ଜୟରାଜ : ସବୁ ବାହାବା' ତାଙ୍କୁ ଦେବିନି ମୁଁ।

ଲତା : (ପଡୁ ପଡୁ ହସିବା) - ଏଇଟା ପ୍ରକୃତରେ ମୋ 'ତିଲ୍ଲନା'କୁ ହିଁ ଭଲ ପାଇଥିଲା ପରି ଲାଗୁଛି। 'ପ୍ରାଚୀନ ଭାସ୍କର୍ଯ୍ୟ ପରି ତାଙ୍କ ଅଙ୍ଗଭଙ୍ଗୀ ଦେଖିବାକୁ ଖୁବ୍ ଚମତ୍କାର।' - ହସ ମାଡ଼ୁଛି।

ଜୟରାଜ : ସେଗୁଡ଼ାକ ଖୁବ୍ ଭଲ ଥିଲା। ତୁ ବି ସୁନ୍ଦର ଭାବେ ଉପସ୍ଥାପନ କରିଥିଲୁ।

ଲତା : (ଖିଲିଖିଲି ହସିବା) ଶେଷ କ୍ଷତି ତ ମୁଁ ପୂରାପୁରି ଭୁଲି ଯାଇଥିଲି। କେବଳ ଗୋଟିଏ ମୁଦ୍ରାରେ ରହିଯାଇଥିଲି ସଂଗୀତର ଶେଷ ମୂର୍ଚ୍ଛନା ପର୍ଯ୍ୟନ୍ତ।

ବିଶ୍ୱାସ : ହେଲେ ତୁମର ସେ ମୁଦ୍ରା ଓ ଅଙ୍ଗଭଙ୍ଗୀ ମୋ'ର ଖୁବ୍ ଭଲ ଲାଗିଥିଲା। ମୋର ସେ ଭାସ୍କର୍ଯ୍ୟ ହିଁ ମନେପଡୁଛି... ତୁମେ ଜାଣିଛ, ପୋଷ୍ଟକାର୍ଡ଼ରେ ସେ ଚିତ୍ରଟା ଥିଲା ଯେଉଁଥିରେ ନୃତ୍ୟାଙ୍ଗନାଜଣକ ଗୋଟେ ଶୁଆ ବା ସେଇମିତି କିଛି ସହ କଥାବାର୍ତ୍ତା କରୁଛି।

ଜୟରାଜ : 'ତଲ୍ଲିନା'ରେ ଶୁଆ ସହ କଥା ହେବା ଭଳି କିଛି ନ ଥାଏ।

ବିଶ୍ୱାସ : ସେ ଯାହା ହେଉ, ମୋତେ ଭଲ ଲାଗିଥିଲା।

ଜୟରାଜ : ଏଇଟା କିମିତି ଭଲ ଲାଗିବ ? 'ତିଲ୍ଲନା' ମଝିରେ ଶୁଆ ସହ ଗପ କରିବା ତା'ର ଉଚିତ ନ ଥିଲା।

ବିଶ୍ୱାସ : ଆଃ, ଆମେ ସେ କଥା ଜାଣିନୁ। କିନ୍ତୁ ଯେପରି ଭାବେ ସେ ନୃତ୍ୟ ପରିବେଷଣ ଶେଷ କଲେ ମୋତେ ସେଇଟା ଖୁବ୍ ଭଲ ଲାଗିଲା। ଆମେ ଜାଣିପାରିଥିଲୁ, ଏଇଟା ହିଁ ହେଉଛି ତାଳି ମାରିବାର ଅସଲ ସମୟ।

ଜୟରାଜ : (ଖୁବ୍ ନିରୁତ୍ସାହିତ ହେଇ) କଫି ପିଅ।

ଲତା : (ପଡୁ ପଡୁ ଜୋର୍‌ରେ ହସିବା)- ଏଇଟା ତ ଏକଦମ୍ ପାଗଳାମୀ।

ଭାବେ କୋମଳ ଏବଂ କୋମଳ ଭାବେ ଗଭୀର। ଦର୍ଶକମାନେ ତ ଭାବ ବିହ୍ୱଳ ହେଇ ଗୋକୁଳଧାମରେ ଯିମିତି ପହଂଚି ଯାଇଥିଲେ ଯେଉଁଠି ଶ୍ରୀରାଧା ତାଙ୍କ ନୈସର୍ଗିକ ପ୍ରେମିକା ପାଇଁ ବ୍ୟାକୁଳ ହେଇ ଯାଉଥିଲେ, ଯିଏ ସେଠାକୁ ଆସିବାରେ ବିଫଳ ହେଇଥିଲେ। ଲତାଙ୍କର ଅଶ୍ଳୀଳ ଅଭିବ୍ୟକ୍ତି ଏବଂ ଉଠୁଥିବା ପଡୁଥିବା ଛାତି ହିଁ ସୂଚାଇ ଦେଉଥିଲା ଯେ ମାନବିକ ସ୍ତରରେ ବି ଏକଥା ସବୁ ସମ୍ଭବ।' (ହସିବା ଓ ପରେ ପରେ ବିଶ୍ୱାସ ପ୍ରତି) ମୋ ଛାତି ଉଠୁଥିଲା ପଡୁଥିଲା, କାରଣ ମୁଁ ବର୍ଣ୍ଣନା କରିବା ପରେ ଅଣନିଃଶ୍ୱାସୀ ହେଇ ଯାଇଥିଲି।

ବିଶ୍ୱାସ : ମୋତେ ସେଇଟା ଆଦୌ ଭଲ ଲାଗିଲାନି।

ଜୟରାଜ : ତୁମକୁ ଜୟଦେବଙ୍କ ଗୀତ ଗୋବିନ୍ଦମ୍ ଭଲ ଲାଗିଲାନି ?

ବିଶ୍ୱାସ : ଓ....ନା !

ଜୟରାଜ : ନା ?

ବିଶ୍ୱାସ : ଓଃ ନା ନା, ମୋ'ର କହିବା କଥା, ତାଙ୍କ ବିରୁଦ୍ଧରେ ମୋ'ର କିଛି କହିବାର ନାହିଁ।

ଜୟରାଜ : ତେବେ କେଉଁ କଥାଟାକୁ ତମେ ଭଲ ପାଇଲନି ?

ବିଶ୍ୱାସ : ଆଚ୍ଛା, ସେମିତି କିଛି ନୁହଁ.... ତେବେ ଦ୍ୱିତୀୟ ଥର ଭାବୁଛି, ମୋତେ ଖୁବ୍ ଭଲ ଲାଗିଲା।

ଜୟରାଜ : (ଲତା ପ୍ରତି) ତୋ ସାଙ୍ଗ କହୁଛି ଯେ ତାକୁ ଅଷ୍ଟପଦୀ ଭଲ ଲାଗିଲାନି। କିନ୍ତୁ ତାକୁ ପଚାର କ'ଣ ଭୁଲ୍ ଥିଲା ସେଥିରେ।

ଲତା : (ତଥାପି ପଢୁଥାଏ) ହୁଁ ?

ବିଶ୍ୱାସ : ମୁଁ ତ କହିନି ମୋତେ ଅଷ୍ଟପଦୀ ଭଲ ଲାଗୁନି ବୋଲି।

ଜୟରାଜ : ତୁମେ କହିଛ।

ବିଶ୍ୱାସ : ନା, ମୁଁ କହିନି।

ଜୟରାଜ : ଓଲୋ, ତୁମେ କହିବାକୁ ଚାହୁଁଛ ମୁଁ ଶୁଣି ପାରିନି। ବୁଢ଼ା ହେଇ ଗଲିଣି। ଏଇଆ କହିବାକୁ ଚାହଁ ନା ତୁମେ ?

ବିଶ୍ୱାସ : ନା; ମୋତେ ଅଷ୍ଟପଦୀ ଭଲ ଲାଗିଛି। କେମିତି ଗୋଟେ ଜିନିଷକୁ ମୁଁ ଘୃଣା କରିବି ଯାହା ସଂପର୍କରେ ମୋର ଆଦୌ ଧାରଣା ନାହିଁ।

ଲତା : ହେଲେ ତୁମେ ତାକୁ ଭଲ ପାଇ ପାରୁଛ, ମୁଁ ଦେଖୁଛି।

ବିଶ୍ୱାସ : ଠିକ୍ ଅଛି। ସେଇଟା କୋମଳ ଭାବେ ଗଭୀର ଆଉ ଗଭୀର ଭାବେ କୋମଳ ଏବଂ ଏମିତି ସବୁ। କିନ୍ତୁ...

ଜୟରାଜ : କିନ୍ତୁ କ'ଣ ? ତୁମେ ତା'ର ବର୍ଣ୍ଣନା ଶୈଳୀକୁ ଭଲ ପାଇଲନି ? କ'ଣ ସେ କରୁ ବୋଲି ତୁମେ ଚାହିଁଥିଲ ? ସେ ପ୍ରତୀକ୍ଷା କରିଥିବା ବେଳେ ଶୁଆ ସହ କଥାବାର୍ତ୍ତା କରିଥା'ନ୍ତା ?

ବିଶ୍ୱାସ : ନା, ମୁଁ ସେ କଥା କହୁ ନଥିଲି।

ଲତା : ବିଶି, ତୁମେ କଥାଟାକୁ ଖାଲି ଏପଟ ସେପଟ କରୁଛ।

ଜୟରାଜ : କୁହ, କୁହ ବାବୁ!

ଲତା : କୋଉ କଥାଟା ତୁମକୁ ଭଲ ଲାଗିଲାନି ?

ବିଶ୍ୱାସ : ଏଇଟା ଥିଲା ବେଶି କାମୋଦ୍ଦୀପକ। (ନୀରବତା)

ଜୟରାଜ : ମୋ ସ୍ତ୍ରୀ ତିରିଶ ବର୍ଷ ତଳେ ଏଇ ଆଇଟମ୍‌ଟା କରିଥିଲେ।

ବିଶ୍ୱାସ : ତାଙ୍କ ଦାମ୍ଭୀକତାକୁ ମୁଁ ପ୍ରଶଂସା କରୁଛି।

ଲତା : ତା'ହେଲେ ତୁମେ କହୁଚ ଯେ ଏଇଟା କରିବା ଠିକ୍ ନ ଥିଲା ?

ବିଶ୍ୱାସ : (ଅସ୍ୱସ୍ତିବୋଧ କରି) ପ୍ରକୃତରେ ମୁଁ କହି ପାରିବିନି। ମୋତେ ବେଶି କିଛି ଜଣା ନାହିଁ ଏ ସଂପର୍କରେ।

ଜୟରାଜ : ଅଥଚ ତୁମେ ଭାବୁଚ, ଏ ସଂପର୍କରେ ତୁମର ଫଇସଲା ଶୁଣାଇବା ଲାଗି ତୁମକୁ ଅଧିକ ଜଣା ଅଛି।

ବିଶ୍ୱାସ : ମୁଁ ଫଇସଲା ଶୁଣେଇନି। ମୁଁ କେବଳ ମୋ'ର ମତାମତ ଦେଇଛି, ବାସ୍ ସେତିକି।

ଜୟରାଜ : ମୁଁ ବହୁତ ଖୁସି ଯେ ତୁମର ଗୋଟେ ମତାମତ ଅଛି। ତା'ର ଯାହା ବି ମୂଲ୍ୟ ଥାଉ, ତୁମକୁ ଏଥିପାଇଁ ସ୍ୱାଗତ କରୁଛି।

ବିଶ୍ୱାସ : ଦେଖନ୍ତୁ, ମୁଁ ଜାଣେ ମୋ'ର ଏ ବିଷୟରେ ଖୁବ୍ ବେଶି ଜ୍ଞାନ ନାହିଁ। ମୁଁ କେବଳ କହିଲି ଏ କଥା ତା'ର କାରଣ ହେଉଛି ଲତା ନାଚୁ ଥିଲା ବୋଲି... ଆଉ...

ଜୟରାଜ : ଯାହା କହିବାକୁ ଚାହୁଁଛ, ସଂପୂର୍ଣ୍ଣ କର। (ବିଶ୍ୱାସ ଚୁପ୍ ରୁହେ) ତେଣୁ ତୁମେ ଏବେ ଯାହା କହିବାକୁ ଚାହୁଁଥିଲ, ତା'ର ପାଖାପାଖି ହେଇ ଯାଇଛେ। ତୁମେ ଚାହଁ ନାହିଁ ଲତା ସେଇ କାମୋଦ୍ଦୀପକ ନୃତ୍ୟ କରୁ।

ଲତା : ପାପା, ଖୁବ୍ ଖରାପ ଶୁଣାଯାଉଛି ଏ ଶବ୍ଦଟା ତୁମ ମୁହଁରୁ। 'କାମୋଦ୍ଦୀପକ ନୃତ୍ୟ' ?

ଜୟରାଜ : ଏଥିରେ ଖରାପ ଲାଗିବାର କିଛି ନାହିଁ। ମୁଁ ତ ସେଇ ନୃତ୍ୟଟା ପୁଣି କରିଥିଲି। ସେନା ବାହିନୀଙ୍କ ପାଇଁ। ମୋର ଜଣେ ବଂଧୁ ସେ ପ୍ରୋଗ୍ରାମ୍‌ର ବ୍ୟବସ୍ଥା କରିଥିଲେ। ଟଙ୍କା ବି ଭଲ ମିଳିଥିଲା। ତୋ' ମାଆ ତ ଏକଦମ୍ ଛାନିଆ ହେଇ ଯାଇଥିଲା । ସେମାନେ ବି ଚାହୁଁଥିଲେ ଜଣେ ନାରୀ ଏଇଟା କରୁ। ତେଣୁ ମୁଁ ତୋ ମାଆର ଯେତେସବୁ ପୋଷାକ ଥିଲା, ତା ସହ ନକଲି ବାଳ... ଯାହା ଯାହା ଦରକାର ଥିଲା ଗୋଟେ ନାରୀ ପରି ମୁଁ ଦେଖାଯିବାକୁ ସବୁ ପିନ୍ଧି ନାଚିଲି। ସେମାନେ ଖୁବ୍ ଭଲ ପାଇଥିଲେ ସେ ନାଚକୁ। ସେମାନେ ଆହୁରି ବେଶି ଖୁସି ହେଇଗଲେ ଯେତେବେଳେ ଜାଣିଲେ ଯେ ମୁଁ ଜଣେ ପୁରୁଷ ବୋଲି। ଅବଶ୍ୟ ସେନା ବାହିନୀକୁ ଯିଏ ଜାଣେ, ସେଇଟା ଗୋଟେ ଆଷ୍ଚର୍ଯ୍ୟଜନକ ଘଟଣା ନୁହେଁ। (ବିଶ୍ୱାସ ପ୍ରତି) ତୁମେ କ'ଣ କହିବାକୁ ଚାହୁଁଛ ଏ ସଂପର୍କରେ ?

ବିଶ୍ୱାସ : ଆପଣଙ୍କ ସାହସକୁ ମୁଁ ତାରିଫ କରୁଛି। ଦେଖନ୍ତୁ ମୁଁ ଏ କଥା କହୁନି ଯେ ମୁଁ ଲତାର ନାଚକୁ ବିରୋଧ କରୁଛି। ଏଇଟା ତା'ର ନିଶା ଏବଂ ତା'କୁ ମୁଁ ବିରୋଧ କରିବା ଆଦୌ ଠିକ୍ ହବନି.... ମାତ୍ର ମୁଁ ଏଇଆ କହିବାକୁ ଚାହେଁ.... କ'ଣ କହୁଛି ମୁଁ? (ଭାବିବାକୁ ଲାଗେ) ହଁ! ଏଇଟାକୁ ଏତେ ବିରାଟ ଗୋଟେ କରିବା ଉଚିତ ନୁହଁ ଯାହାକି... ଆପଣ ଜାଣନ୍ତି। ଅବଶ୍ୟ ମୁଁ ସେ କଥା ଭାବୁନି। ଅବଶ୍ୟ ଆପଣ ସେ କଥା ଭାବି ପାରନ୍ତି, ହେଲେ ମୁଁ ସେପରି ଭାବୁନାହିଁ। ଆଉ ମୁଁ ଜାଣେନା

ଲତା କ'ଣ ଭାବୁଛି ଏ ସଂପର୍କରେ, ତେଣୁ... (ଦୁଇ କାନ୍ଧକୁ ଉପରକୁ ଉଠାଏ, ତଳକୁ କରେ ଏବଂ ଶଙ୍କିତ ହସ ହସେ।)

ଲତା : ତିରିଶ ବର୍ଷ ତଳେ ଏଇ ନୃତ୍ୟାଂଶକୁ ପାପା, ମାମା ପାଇଁ ତିଆରି କରିଥିଲେ। ଅଷ୍ଟପଦୀ ଭଳି ନୃତ୍ୟ ପାଇଁ ସେମାନଙ୍କୁ ବିଦେଶରେ ବି ଖୁବ୍ ପ୍ରଶଂସା ମିଳିଛି। ମୁଁ କାହିଁକି ଆଜି ସେପରି ନୃତ୍ୟ କରି ପାରିବିନି, ବୁଝିପାରୁନି।

ବିଶ୍ୱାସ : ହଁ, ଅବଶ୍ୟ। ଯଦି ତୁମେ ଠିକ୍ ସେଇଆ ଚାହୁଁଥାଅ, କେହି ବି ତୁମକୁ ଅଟକାଇ ପାରିବେନି।

ଜୟରାଜ : ତା' ପାଇଁ ଏଇଟା ମଙ୍ଗଳ ହେବ। ପୁରୁଣା ଦିନମାନଙ୍କରେ....

ଲତା : (ବିଶ୍ୱାସ ପ୍ରତି) ତୁମେ ମୋତେ ବଂଦ କରିବାକୁ ଚାହଁ? ତୁମେ କରି ପାରିବନି। ହେଲେ ତୁମେ ଚାହୁଁଛ କି? (ଟିକିଏ ଅଟକି)

ବିଶ୍ୱାସ : କ'ଣ କହିଥିଲ ମତେ, ମନେଅଛି ତୁମର? ଏଇ ଘରେ? ଗୋଟେ ଏକଦମ୍ ସିଧାସଳଖ, ଅନ୍ୟଟା ହଉ ଦେଖିବା?

ଲତା : (ସ୍ମିତ ହସି) ହଁ।

ବିଶ୍ୱାସ : (ବିଶ୍ୱସ୍ତ ଭାବରେ) ଏବେ ବି ସେ କଥା ଉପରେ ତୁମେ କାୟମ କି?

ଲତା : (ବିଶ୍ୱସ୍ତତାର ଉତ୍ତରରେ) ହଁ।

ବିଶ୍ୱାସ : ଧନ୍ୟବାଦ, ମୋ'ର ଆଶା ତୁମ ବାପା ତମକୁ ଆଉ କିଛି ଅଷ୍ଟପଦୀ ଶିଖେଇବେ। (ଜୟରାଜ ପ୍ରତି) ଏବେ ଆପଣ ଯଦି କିଛି ମନେ ନ କରନ୍ତି, ମୋତେ ବର୍ତ୍ତମାନ ଦୋକାନକୁ ଯିବାକୁ ହବ, ଜିଲାପି ତିଆରି କାମ ତଦାରଖ କରିବାକୁ। ଗୋଟେ ବହୁତଳ ବିଶିଷ୍ଟ ମିଠେଇ କଂମ୍ପ୍ଲେକ୍ସର ଯୋଜନାକୁ ଅନୁମୋଦନ କରିବା ଲାଗି ସରକାରୀ କର୍ମଚାରୀଙ୍କ ପଛରେ ଧାଇଁବା କାମରେ ବାପା ଏବେ ଖୁବ୍ ବ୍ୟସ୍ତ।

ଜୟରାଜ : ମାରଓ୍ୱାଡ଼ି ସଂପ୍ରଦାୟ ପାଇଁ ସେଇଟା ତ ଗୋଟେ ସ୍ୱର୍ଗ ପାଲଟିଯିବ।

ଲତା : ଜଳଖିଆ ଖାଇବାକୁ ରହିବନି?

ବିଶ୍ୱାସ : ନା, ରୋଷେୟାମାନେ ସବୁ ଘିଅ ଚୋରି କରି ନେଇଯିବା ପୂର୍ବରୁ ମୋତେ ଯିବାକୁ ହବ। ତୁମ ମା'ଙ୍କୁ କିଛି ଗୋଟେ ବାହାନା କରିଦେବି ଆଉ ଚାଲିଯିବି। (ରୋଷେଇଶାଳ ଦେଇ ପ୍ରସ୍ଥାନ)

ଲତା : କ'ଣ ଭାବୁଚ ତାଙ୍କ ସଂପର୍କରେ ?

ଜୟରାଜ : ଟିକିଏ କିମିତି ଅବାଗିଆ ବ୍ୟବହାର ଲାଗୁନି ସେ ?

ଲତା : (ଦୀର୍ଘଶ୍ୱାସ) - ସେଇଟା ତାଙ୍କର ଗୋଟେ ପ୍ରକାରର ଅଭ୍ୟାସ, ଅନ୍ୟ ସମସ୍ତଙ୍କ ପରି

ଜୟରାଜ : ଭାବୁଚି, ବାପଟା ତା'ର କିମିତିଆ ହେଇଥିବ ?

ଲତା : ଖୁବ୍ ଜଲଦି ତୁମର ଭେଟ ହବ ତାଙ୍କ ସହ। (ସବୁ ଖବରକାଗଜ ଗୋଟାଇ ଏକାଠି କରେ)

ବିଶ୍ୱାସ : (ପ୍ରବେଶ କରେ ଏବଂ ଥତ୍ମତ ହେଇ କହେ) ଏବେ ତମ ମା'ଙ୍କ ଅବସ୍ଥା କ'ଣ, ତୁମର ଦେଖିବା ଉଚିତ ବୋଲି ମୁଁ ଭାବୁଚି। (ଲତା ଆଉ ଜୟରାଜ ଠିଆ ହେଇ ପଡ଼ନ୍ତି)

ଲତା : କିଛି ଅସୁବିଧା ହେଇଛି ?

ବିଶ୍ୱାସ : ସେ ରୋଷେଇ ଘରେ ବସି କାନ୍ଦୁଛନ୍ତି।

ଲତା : ମାମା ! (ତରତର ହୋଇ ରୋଷେଇଶାଳ ଦେଇ ଚାଲିଯାଏ) (ଜୟରାଜ ଚୁପ୍‌ଚାପ୍ ବସି ପଡ଼ନ୍ତି ଧୀରେ)

ବିଶ୍ୱାସ : ହେଇପାରେ, ସେ ବୋଧେ ପିଆଜ କାଟୁଥାଇପାରନ୍ତି। ସେଇଟା ମୁଁ ଲକ୍ଷ୍ୟ କରିନି।

ଜୟରାଜ : ଠିକ୍ ହେଇଯିବେ ସେ। ସେ କାନ୍ଦୁଛନ୍ତି।

ବିଶ୍ୱାସ : ଆପଣ ଯଦି ଚାହାନ୍ତି, ମୁଁ ଅଟକିଯିବି। (କୌଣସି ପ୍ରକାର ଉତ୍ତର ନାହିଁ)। ମାତ୍ର ମୋର ନିହାତି ଯିବା କଥା। ଠିକ୍ ଅଛି, ଆପଣ ଯଦି କିଛି ମନେ ନ କରିବେ, ବାଏ। (କିଛି ଉତ୍ତର ମିଳେନା। ସେ ତା'ର କାନ୍ଧକୁ ଉଠାଏ ଓ ପକାଏ ଏବଂ ମନେ ମନେ କୁହେ) ଅଦ୍ଭୁତ ଲୋକ। (ଡ୍ରଇଂରୁମ୍ ଦେଇ ପ୍ରସ୍ଥାନ କରେ) (ଲତା, ରତ୍ନାଙ୍କ ସହ ପ୍ରବେଶ)

ରତ୍ନା : ସବୁ ଠିକ୍ ଅଛି।

ଲତା : ଉପର ମହଲାକୁ ଯାଇ କିଛି ସମୟ ଶୋଇ ପଡୁନୁ କାହିଁକି ?

ରତ୍ନା : ନା ନା, ମୁଁ ଠିକ୍ ଅଛି।

ଲତା : ବସ। ତମ ପାଇଁ କଫି ଆଣିବି ?

ରତ୍ନା : (ବସନ୍ତି) ନା, ଖାଲି କୁକର୍‌ଟା ଷ୍ଟୋଭ ଉପରେ ବସେଇ ଦେ। (ଲତା କଫି ଟ୍ରେ ଉଠାଏ)

ଜୟରାଜ : ଜଳଖିଆ ତିଆରି ହେଇନି ? କ'ଣ କରୁଥିଲ ତୁମେ ରୋଷେଇଶାଳରେ ଏଯାକେ ? (ଲତା ଅବଜ୍ଞାସୂଚକ ଚାହାଣି ଦିଏ ଜୟରାଜଙ୍କୁ ଏବଂ ଟ୍ରେ ସହ ରୋଷେଇଶାଳକୁ ପ୍ରସ୍ଥାନ) ତୁମର ସେଇ ମୁଣ୍ଡବିନ୍ଧା ? ନା ଲତାର ନାଚ ପାଇଁ ଥିବା ସମସ୍ତ ଉତ୍ସାହର ଅନ୍ତ ହେଇ ଯାଇଥିବା ଯୋଗୁଁ ମାନସିକ ଅବସାଦ ? ଏତେ ସକାଳୁ ସକାଳୁ ପିଇବାଟା ଠିକ୍ ହବନି।

ରତ୍ନା : ଏବେ ମୁଁ ପିଇବାକୁ ଚାହୁନି।

ଜୟରାଜ : ତା'ହେଲେ ଏ ପ୍ରକାର ମାନସିକ ପରିବର୍ତ୍ତନ ହେବାର କାରଣ କ'ଣ ହେଇପାରେ ?

ରତ୍ନା : ତୁମର କ'ଣ ମାନସିକ ପରିବର୍ତ୍ତନ ହୁଏନି ?

ଜୟରାଜ : ହୁଏ, ହେଲେ ମୁଁ ରୋଷେଇଶାଳରେ ବସି କେବେ କାନ୍ଦେନି।

ରତ୍ନା : ନା। ତୁମେ ଏଇ ରୁମ୍‌ରେ ବସି କେବଳ ମଦ ପିଅ !

ଜୟରାଜ : ତୁମେ ସେଇଆ କର ମୁଁ ଚାହେଁ। ଅନ୍ତତଃ ଏଇଟା କାନ୍ଦିବାରୁ ତୁମକୁ ବିରତ କରିବ। ମୋତେ ଦେଖ। ମୁଁ କେବେ କାନ୍ଦେନି।

ରତ୍ନା : ତା'ର କାରଣ ହେଉଛି, ତୁମେ ଜଣେ... ପୁରୁଷ !

ଜୟରାଜ : ଧନ୍ୟବାଦ। ଆଗରୁ ଅନ୍ତତଃ କେବେ ବି ଏପରି କୃତଜ୍ଞତା ଜଣେଇ ନଥିଲ ତୁମେ।

ରତ୍ନା : ଏବେ ପୁଣି ଆରମ୍ଭ କରନା....

ଜୟରାଜ : ଠିକ୍ ଅଛି। ଆମେ କୌଣସି 'ଲିଙ୍ଗ' ଉପରେ କଥାବାର୍ତ୍ତା କରିବାନି। ଚାଲ ତମ ବିଷୟରେ କଥାବାର୍ତ୍ତା ହବା।

ରତ୍ନା : ସେଇଆ କରିବା, ତୁମେ ମୋ ବିଷୟରେ କଥାବାର୍ତ୍ତା କର; ମୁଁ ତୁମ ବିଷୟରେ କଥା ହେବି।

ଜୟରାଜ : ସେ କଥା ହବନି ଯଦି ମୁଁ ଅନ୍ୟ କୌଣସି ବିଷୟ ଚୟନ କରେ।

ରତ୍ନା : ଆମ ପାଖରେ ବିଷୟବସ୍ତୁର ଅଭାବ କେବେ ଥିଲା କି ?

ଜୟରାଜ : ଗୋଟେ ଉତ୍ତମ ବିଷୟ। ତୁମକୁ ଏବେ ଷାଠିଏ ଆଉ ମୋତେ ବାଷଠି। ଏବେ ସମୟ ଆସିଛି ଆମେ ନିଜକୁ ସୁନିର୍ବାଚିତ କରିବା ଉଚିତ।

ରତ୍ନା : କୋଉ ବିଷୟ ?

ଜୟରାଜ : ଶଙ୍କର। (ଟିକିଏ ଅଟକି ଯାଇ)

ରତ୍ନା : (ତର୍କ କରିବା ଭଳି) ଯେକୌଣସି ବିଷୟ ହେଇପାରେ ହେଲେ ସେ ବିଷୟ ନୁହେଁ। ପ୍ଲିଜ୍!

ଜୟରାଜ : ଓ, ତୁମକୁ ସାଂଗେ ସାଂଗେ ଖରାପ ଲାଗିଲା, ନୁହେଁ?

ରତ୍ନା : କୁହ ତେବେ! କହିଚାଲ। ଯେତେ ଖରାପ ହବାକୁ ଚାହୁଁଛ ହୁଅ। ତୁମ ସହ ଲଢ଼ିବା ପାଇଁ ମୋ'ର ଜ୍ଞ ନାହିଁ।

ଜୟରାଜ : ନା, ସେ ବିଷୟରେ କଥା ହବା ତ ଖୁବ୍ ସହଜ। ବରଂ ଅନ୍ୟ କିଛି ବିଷୟରେ କଥା ହେଇପାରୁ ଆମେ।

ରତ୍ନା : ତୁମେ କେବେ କଥା ହୁଅନାହିଁ, ବରଂ ଆକ୍ରମଣ କର।

ଜୟରାଜ : ସେଇଟା ତ ମୁଁ ତୁମଠୁ ଶିଖିଛି। ଚାଲ 'ଲତା' ସଂପର୍କରେ କଥା ହବା।

ରତ୍ନା : ତା' ସଂପର୍କରେ କ'ଣ କଥା ?

ଜୟରାଜ : ସେ ଗୋଟେ ନୃତ୍ୟାଙ୍ଗନା।

ରତ୍ନା : ଅବଶ୍ୟ। ସମସ୍ତେ ଏବେ ତାକୁ ଚିହ୍ନିଲେଣି। ମୋର ଚେଷ୍ଟା ପରେ.....

ଜୟରାଜ : ଆମର ପ୍ରଚେଷ୍ଟା।

ରତ୍ନା : ହଁ।

ଜୟରାଜ : ଆଉ ତୁମେ ଖୁସି ?

ରତ୍ନା : କିମିତିକା ପ୍ରଶ୍ନ ପଚାରୁଛ !

ଜୟରାଜ : ତା' ପାଇଁ ତୁମେ ଖୁସି କି ?

ରତ୍ନା : ଅବଶ୍ୟ ! ସେ... ସେ ଏବେ ତା' ଯଶ ପଥର ଯାତ୍ରୀ, ଯାହା ମୁଁ ଚାହିଁଥିଲି ତା' ପାଇଁ। ମୋର ଆଶୀର୍ବାଦ ଆଉ ଉପଦେଶ ସବୁବେଳେ ରହିଥିଲା ତା' ପାଇଁ। ଯେହେତୁ ଏବେ ତା' ନୃତ୍ୟ ସଠିକ୍ ଲୋକମାନେ ଦେଖୁଛନ୍ତି, ତା'ପାଇଁ ଆଉ ବେଶି ଅସୁବିଧା ହବନି... ନିଶ୍ଚିତ ଭାବେ, ଏବେ ତାକୁ ଖୁବ୍ କଠିନ ପରିଶ୍ରମର ସହ ନୃତ୍ୟାଭ୍ୟାସ କରିବାକୁ ପଡ଼ିବ, ଆଉ ତା'ପରେ ଅନେକ ଉତ୍ସବ ସବୁ ହେଉଛି ବିଦେଶରେ। ମୁଁ ମୋର ପାରୁ ପର୍ଯ୍ୟନ୍ତ ଚେଷ୍ଟା କରିବି ତା' ନାଁ ସେମାନଙ୍କ ଭିତରେ ରହୁ ବୋଲି। ମୋର ଯେତେସବୁ ଲୋକଙ୍କ ସହ ସଂପର୍କ ରହିଛି, ସେ ସବୁର ସାହାଯ୍ୟ ମୁଁ ନେବି ତାକୁ ବିଦେଶ ଯିବା ଦଳରେ ରଖିବାକୁ। ହଁ, ଖୁସି ହେବା ଲାଗି ମୋ ପାଖରେ ସମସ୍ତ କାରଣ ରହିଛି।

ଜୟରାଜ : ତୁମେ ଖବରକାଗଜର ରିଭ୍ୟୁ ସବୁ ପଢ଼ିଲ କି ?

ରତ୍ନା : ସବୁଗୁଡ଼ାକ ପଢ଼ିନି ଏ ଯାକେ।

ଜୟରାଜ : ସେସବୁକୁ ପଢ଼ିବାକୁ ଚାହୁଁନ ତୁମେ ?

ରତ୍ନା : ହଁ ! ପଢ଼ିବାକୁ ଚାହୁଁଛି ମୁଁ....

ଜୟରାଜ : ଆଗରୁ ପଢ଼ିଲନି କାହିଁକି ତୁମେ ?

ରତ୍ନା : (ଖବରକାଗଜ ଉଠାନ୍ତି) ଆଚ୍ଛା, ଏବେ ମୁଁ ପଢ଼ିବି ସେ ସବୁକୁ। ବିଶ୍ୱାସ ଆସିବା ପରେ ମୁଁ ଟିକେ ବ୍ୟସ୍ତ ରହିଗଲି ଆଉ....

ଜୟରାଜ : ସିଏ ଇ ତ ଏସବୁ ଖବରକାଗଜ ଆଣିଥିଲା।

ରତ୍ନା : (ଟିକିଏ ଶଙ୍କିଯାଇ) ହଁ, ମୁଁ କିନ୍ତୁ ରୋଷେଇ ଘରେ ବ୍ୟସ୍ତ ରହିଗଲି।

ଜୟରାଜ : କି ପ୍ରକାରର ରିଭ୍ୟୁ ବାହାରିଚି ତା' ଉପରେ ତୁମର କ'ଣ ଜାଣିବାକୁ ଇଚ୍ଛା ନାହିଁ ?

ରତ୍ନା : ତା' ଉପରେ କି ଲେଖା ସବୁ ବାହାରିଛି ମୁଁ ଜାଣେ...

ଜୟରାଜ : ତୁମେ ତ ଆଖି ବି ପକେଇ ସେ ସବୁ ଉପରେ...

ରତ୍ନା : (ବଡ଼ ପାଟି କରି) ଶୁଣିଥିଲି। ଚମତ୍କାର ରିଭ୍ୟୁ ! ଉତ୍ସବର ତାରକା ! ଏ ଦଶକର ନୃତ୍ୟାଙ୍ଗନା ! ଏମିତିକା ଲେଖା ତା' ସଂପର୍କରେ କାହିଁକି ବାହାରିବନି ? ସେଇଟା ମୋର ପ୍ରାପ୍ୟ ରାତି ରାତି ଅନିଦ୍ରା ହେଇ ସବୁ ବ୍ୟବସ୍ଥା ଦେଖିବା ଆଉ ସମାଲୋଚକମାନଙ୍କୁ ମିଠା ମିଠା କଥା କହିବା। ମୋ କଠିନ ପରିଶ୍ରମର ମୂଲ୍ୟ ମିଳିଛି, ମିଳିଛି ନା ନାହିଁ ? ମିଳିଛି ନା ନାହିଁ ? (ଖବରକାଗଜ ନିଅନ୍ତି ଓ ଶୋଇବା ଘରକୁ ଯିବା ଲାଗି ଉଦ୍ୟତ)

ଜୟରାଜ : କୁଆଡ଼େ ଯାଉଛ ?

ରତ୍ନା : ଏ ସବୁ ଲେଖାକୁ ଆମ ଆଲବମ୍‌ରେ ରଖିବାକୁ।

ଜୟରାଜ : ଆମ ଆଲବମ୍ ?

ରତ୍ନା : ହଁ।

ଜୟରାଜ : ତା' ଉପରେ ବହାରିଥିବା ଲେଖା ସବୁ ଆମ ଆଲ୍‌ବମ୍‌ରେ ରଖିବ ତୁମେ ?

ରତ୍ନା : କାହିଁକି ରଖିବିନି ? ବହୁତ ଖାଲି ଜାଗା ପଡ଼ିଛି ସେଥିରେ !

ଜୟରାଜ : ତା' ପାଇଁ ଗୋଟେ ଅଲଗା ଆଲବମ୍ ହବା ଦରକାର।

ରତ୍ନା : ଘରେ ଆଉ ଆଲବମ୍ ନାହିଁ।

ଜୟରାଜ : ଠିକ୍ ଅଛି। ଆମେ କିଣିଦବା ଗୋଟେ !

ରତ୍ନା : ଠିକ୍ କଥା। ତୁମେ ଯାଅ ଆଉ ଗୋଟେ କିଣି ଆଣ। ହେଲେ ଏ ସବୁକୁ ମୁଁ ମୋ ଆଲବମ୍‌ରେ ରଖୁଛି।

ଜୟରାଜ : ଆମ ଆଲବମ୍।

ରତ୍ନା : ହିଁ !

ଜୟରାଜ : ଏ ସବୁ ଲେଖାକୁ ତୁମେ ଆମ ଆଲବମ୍‌ରେ ରଖନି।

ରତ୍ନା : ମୁଁ ରଖିବି।

ଜୟରାଜ : ଏ ସବୁ ସେ ଜାଗା ପାଇଁ ଉଦ୍ଦିଷ୍ଟ ନୁହେଁ। (ନୀରବତା) ସେଇ ସମାଲୋଚକମାନେ ତାକୁ ପ୍ରଶଂସା କରିଛନ୍ତି କାରଣ ସେଇଟା ତା'ର ହକ୍। ସେମାନେ ତୁମକୁ କୌଣସି ଦୟା ଦେଖାଇ ନାହାନ୍ତି। ଏକ କଥାକୁ ସାମ୍ନା କରିବାର ସାହସ ଦେଖାଅ, ନାରୀ।

ଲତା : (ଭିତରୁ, ଖୁସିରେ) ନାସ୍ତା ତିଆରି ହେଇଗଲା। ଆସ ଖାଇବ।

ଜୟରାଜ : ମୁଁ ଦୁଃଖିତ, ରତ୍ନା, ତୁମର ବୋଲି ବାହାନା କରି ସେ ଲେଖାଗୁଡ଼ାକ ଆମ ଆଲବମ୍‌ରେ ତୁମେ ରଖିବାଟା ମୁଁ ଦେଖି ପାରିବିନି।

ଲତା : (ଭିତରୁ) ଏକଦମ୍ ଗରମ ଗରମ ହେଇଚି ଇଡ଼ଲି। ଜଲଦି ଆସ, ଗରମ ଗରମ ହିଁ ଭଲ ଲାଗିବ ଖାଇବାକୁ !

ଜୟରାଜ : ଆସ, ନାସ୍ତା କରିବା।

ରତ୍ନା : (କ୍ଷୀଣ ସ୍ୱରରେ) ମୋତେ ଭୋକ ଲାଗୁନି। (ଛାତିରେ ସେ ଖବର କାଗଜ ସବୁ ଜାକିଜୁକି ଶୋଇବା ଘର ଆଡ଼କୁ ଯା'ନ୍ତି)

ଜୟରାଜ : ରତ୍ନା। (ରତ୍ନା ଅଟକିଯା'ନ୍ତି) ଇର୍ଷା କରିବା ଲାଗି ତୁମର ଅନ୍ତତଃ ଗୋଟେ ଝିଅ ଅଛି।

ରତ୍ନା : (ରତ୍ନା ଭାଂଗି ପଡ଼ନ୍ତି) ଓଃ ! ନିଜ ଶୋଇବା ଘରକୁ ତୀବ୍ର ଗତି ଚାଲିଯା'ନ୍ତି) (ବଂଶୀର ସ୍ୱର ଚାଲିଥାଏ। ଜୟରାଜ ରୋଷେଇ ଘରକୁ ଯା'ନ୍ତି। ଡ୍ରଇଂରୁମ୍ ହଠାତ୍ ବଗିଚାରେ ରୂପାନ୍ତରିତ ହୁଏ ଚନ୍ଦ୍ରସ୍ନାତ। କିଛି ସମୟ ପରେ ପ୍ରବେଶ କରନ୍ତି ଯୁବକ ଜୟରାଜ ଓ ଯୁବତୀ ରତ୍ନା ବଗିଚା ଭିତରୁ। ଏକ ସୁନ୍ଦର ଭାରତନାଟ୍ୟମ୍ ପୋଷାକ ପିନ୍ଧିଥାନ୍ତି ରତ୍ନା ଏବଂ ତା'ଉପରେ ଘୋଡ଼େଇ ହେଇଥାନ୍ତି ଗୋଟେ ଶାଲ। ଜୟରାଜ

ପିନ୍ଧିଥାନ୍ତି ସାଧାରଣ କୁର୍ତ୍ତା ପାଇଜାମା। ସେ ମଦ୍ୟପାନ କରିବା ପରି ଜଣା ପଡୁଥାନ୍ତି ।)

ଜୟରାଜ : ଆସ ! ନର୍କର ଦ୍ୱାର ଉନ୍ମୁକ୍ତ ରହିଚି।

ରତ୍ନା : ସୁ ଉଉଉଉଉଉ...

ଜୟରାଜ : ଭିତରକୁ ଆସ ରତ୍ନା ଦେବୀ। ଅମୃତଲାଲ୍ ପାରିଖ୍‌ଙ୍କ ଗୃହ ଭିତରକୁ।

ରତ୍ନା : ଚୁପ୍। ତୁମେ ଉଠେଇଦବ...

ଜୟରାଜ : ଗୃହକର୍ତ୍ତା ଘରେ ନାହାନ୍ତି ଏବେ। ଦେଶ ସେବା ଯୋଗୁଁ ତାଙ୍କୁ ମିଳୁଥିବା ପୁରସ୍କାର ଗ୍ରହଣ କରିବା ଲାଗି ବାହାରକୁ ଯାଇଛନ୍ତି, ଠିକ୍ ଯେତେବେଳେ ତାଙ୍କ ଘରର ଲକ୍ଷ୍ମୀ ନିଜର ପ୍ରତିଭା ପାଇଁ ଗ୍ରହଣ କରିବାକୁ ଯାଇଛନ୍ତି ଘନଘନ କରତାଳି।

ରତ୍ନା : ଚୁପ୍ ରୁହ, ଜୟ। ଛୁଆଟାକୁ ତମେ ଉଠେଇଦବ ଦେଖୁଚି।

ଜୟରାଜ : (ତାଚ୍ଛଲ୍ୟ କରି) ଓଃ, ଛୁଆ! ତା' ବିଷୟରେ ତ ମୁଁ ଏକବାରେ ଭୁଲି ଯାଇଥିଲି। ଆମ ଛୁଆଟା ଜଲ୍‌ଦି ଶୋଇ ଯାଏ। ତାକୁ ହଇରାଣ କରିବା ଠିକ୍ ହବନି। ହେଲେ ତୁମେ ଯାଉଛ କୁଆଡ଼େ ?

ରତ୍ନା : ଉପରକୁ। ଠିକ୍ ଅଛି କି ନାହିଁ ଦେଖିବାକୁ।

ଜୟରାଜ : ହଁ, ଚାଲ ଉପରକୁ ଯିବା। ଅନ୍ତତଃ ଦେଖିବା ଛୁଆଟା ଠିକ୍ ଅଛି କି ନାହିଁ।

ରତ୍ନା : ତୁମେ ଏଇଠି ରୁହ। ଅନ୍ତତଃ ଚୁପ୍ ରହିବା ଶିଖିବା ପର୍ଯ୍ୟନ୍ତ।

ଜୟରାଜ : ଓ, ମୁଁ ଚୁପ୍ ରହିବି! (ଚୁପ୍ ଚୁପ୍ କହନ୍ତି) ପ୍ରକୃତ ଚୁପ୍। ଆସ, ଚୁପ୍ ଚୁପ୍ ଉପରକୁ ଯିବା (ଜୋର୍‌ରେ କାଶି ଉଠନ୍ତି)

ରତ୍ନା : (ଟିକିଏ ଦୂରକୁ ଠେଲି ଦିଅନ୍ତି) ପେଟେ ପିଇଛ, ଏଇଠି ରୁହ। ଉପରକୁ ଆସିବାକୁ ସାହସ ବି କରନି। (ଶୋଇବା ଘରକୁ ପ୍ରସ୍ଥାନ)

ଜୟରାଜ : (ନିଜକୁ ନିଜେ କୁହନ୍ତି) ହଁ, ହଁ, ମୁଁ ଏଇଠି ହିଁ ରହିବି। ତୁମେ ଯାଅ ଆଉ ଦେଖିଆସ କିମିତି ଶୋଇଛି ଆମ କୁନି ଶଙ୍କର। ଦେଖିବ ଯିମିତି ତା'

ନାକ ଶୁଖିଲା ଥାଏ ଆଉ ତା' ଶେଯ ଓଦା ହେଇ ନ ଥାଏ। ତା' ଜେଜେବାପା ତ ସବୁଦିନ ସକାଳେ ତା' ଶେଯ ଆସି ତଦାରଖ କରନ୍ତି। ଏମିତିକି ତା'କୁ ଏପଟ ସେପଟ କରି ତା' ପଛପଟ ବି ତଦାରଖ କରନ୍ତି। ତା'ପରେ ଜେଜେବାପା ତାଙ୍କ ଆଙ୍ଗୁଠି ପୂରାଇ ତା' ପାଟିର ମାଢ଼ି ବି ତଦାରଖ କରନ୍ତି। ଯେତେବେଳେ ତା'ର ସବୁ ଦାନ୍ତ ଉଠିଯିବ, ମୁଁ ଭାବୁଚି, ସେ ତାଙ୍କ ଆଙ୍ଗୁଠିକୁ କାମୁଡ଼ି ଦବ। (ହଠାତ୍ ହାତଟା ଝିଙ୍କି ଆଣିବା ଭଳି ଅଭିନୟ କରନ୍ତି) ଆଉ ଯେତେବେଳେ ସେ ବଡ଼ ହେଇଯିବ, କିମିତି ନାଚିବାକୁ ହବ ମୁଁ ତାକୁ ଶିଖେଇ ଦେବି... ଶିବଙ୍କ ନୃତ୍ୟ। ମଣିଷର ନୃତ୍ୟ। ଆଉ ଯେତେବେଳେ ସେ ପୂରାପୁରି ଶିଖି ଯିବ, ମୁଁ ତା ଜେଜେବାପାଙ୍କ ପାଖକୁ ତାକୁ ନେଇ ଆସିବି ଆଉ ଦେଖିବି ସେ ତାଙ୍କ ମୁଣ୍ଡ ଉପରେ ନାଚିବ- ତାଣ୍ଡବ ନୃତ୍ୟ। (ହଠାତ୍ ନଟରାଜ ମୁଦ୍ରାରେ ଠିଆ ହୁଅନ୍ତି ଓ ସେଇ ମୁଦ୍ରାରେ କୁଦା ମାରନ୍ତି।) ନୃତ୍ୟର ଈଶ୍ୱର ନିଜ ଡମ୍ବରୁ ବଜାଉଥାନ୍ତି ଏବଂ ରାକ୍ଷସବୁ ଦଳି ଦିଅନ୍ତି। (ଭାରସାମ୍ୟ ହରାନ୍ତି ନିଜର ଏବଂ ତଳେ ପଡ଼ିଯା'ନ୍ତି। ରତ୍ନା ଆସି ତାଙ୍କୁ ଠିଆ କରାଇବାରେ ସାହାଯ୍ୟ କରନ୍ତି) କିମିତି ଅଛି ନୃତ୍ୟର ଆମ କୁନି ଈଶ୍ୱର ?

ରତ୍ନା : ମୋତେ ଜଣା ନାହିଁ। କାଳେ ଉଠି ପଡ଼ିବ, ଏଇ ଡ଼ରରେ ମୁଁ ବତୀ ବି ଲିଭେଇନି। ମୁଁ ତା' ପାଖରେ ଖାଲି ଠିଆ ହେଲି। କିନ୍ତୁ ତା'ର କୌଣସି ଶବ୍ଦ ନ ଥିଲା।

ଜୟରାଜ : ଭଲ, ବହୁତ ଭଲ। ଏବେ ସେ ସ୍ୱପ୍ନ ରାଜ୍ୟରେ। ଆଉ ସେ ସେଠି। ୟା'ଠୁ ସେ ଜାଗା ଖୁବ୍ ବେଶି ଭଲ ! ଆସନ୍ତାକାଲି ଏ ଘର ସାମ୍ନାରେ ଗୋଟେ ଫଳକ ଝୁଲାଇ ଦେବି ମୁଁ, ଯେଉଁଥିରେ ଲେଖାଥିବ : ଯଦି କୋଉଠି ସ୍ୱର୍ଗ ଥାଏ, ଏଇଟା ତାହା ନୁହଁ, ଏଇଟା ତାହା ନୁହଁ, ଏଇଟା ତାହା ନୁହଁ...

ରତ୍ନା : ଆମର ନୂଆ ଆୟା କୁଆଡ଼େ ଗଲା ? ବୋଧେ ରୋଷେଇ ଘର ଚଟାଣରେ ଜଲଦି ଶୋଇ ଯାଇଛି। ଯଦି ତାକୁ ଭୋକ ଲାଗେ ତା'ର ପିଲା ପାଖରେ ରହିବା ଉଚିତ ଥିଲା।

ଜୟରାଜ : ତୁମର ବି ପିଲା ପାଖରେ ରହିବା ଉଚିତ ଥିଲା।

ରତ୍ନା : ତୁମେ ତା' ପାଖରେ ରହିଯିବା ଲାଗି ମୁଁ କହିବା ଉଚିତ ଥିଲା, ଅନ୍ତତଃ, କିଛିଟା ତ ତୁମର ଉପଯୋଗ ହେଇ ପାରିଥାନ୍ତା ଏଠି !

ଜୟରାଜ : ସେଠି ମୋର କିଛି ଆବଶ୍ୟକ ନଥିଲା ବୋଲି ତୁମେ ଭାବୁଚ ? ସବୁଠୁ ଜୋର୍‌ରେ ମୁଁ ହିଁ ତାଳି ମାରିଥିଲି । (ଜୋର୍‌ରେ ତାଳି ମାରିବା)

ରତ୍ନା : ବନ୍ଦକର ଏସବୁ । ମୁଁ ଶୋଇବାକୁ ଚାଲିଲି । ତୁମେ ଏଠି ଶୋଇ ପାର ।

ଜୟରାଜ : ଓଃ, ତୁମକୁ ମୁଁ କଷ୍ଟ ଦେଲି କି ? ମୋ ସହ ତୁମେ ଶୋଇବାକୁ ଚାହୁଁନ ? କେବେ ବି ନୁହଁ ଆଉ ?

ରତ୍ନା : ବାଜେ କଥା କୁହନା । ମୋ ପିଲା ପାଖରେ ଶୋଇବା ଭଳିଆ ଅବସ୍ଥାରେ ନାହିଁ । ତୁମେ ଖୁବ୍ ଗନ୍ଧଉଛ ।

ଜୟରାଜ : ଅଥଚ ତୁମେ ଲଗାଇଥିବା ଶସ୍ତା ଅତର ଆଉ ମଲ୍ଲୀ ଫୁଲର ଉତ୍କଟ ବାସ୍ନାରେ ଆମ ପିଲାଟା ତୁମ ପାଖରେ ଶୋଇଯିବ ବୋଲି ଭାବୁଚ ?

ରତ୍ନା : (ଦେହରୁ ଶାଲ୍ କାଢ଼ି ଜୟରାଜ ପାଖକୁ ଫୋପାଡ଼ି ଦିଏ) ଏଇଠି । ଉପରକୁ ଆସି ବିରକ୍ତି କରିବନି ।

ଜୟରାଜ : (ରତ୍ନାର ପୋଷାକକୁ ପ୍ରଶଂସା କରନ୍ତି) କେତେ ସୁନ୍ଦର ଦେଖାଯାଉଚ ତୁମେ ! ଏଇଥିପାଇଁ ତା'ହେଲେ ତୁମେ ନାଚିବାକୁ ଭଲ ପାଉଛ ? ତୁମ ବେଶଭୂଷାକୁ ଲୋକେ ପ୍ରଶଂସା କରନ୍ତୁ ?

ରତ୍ନା : (ଘୃଣାରେ) ତୁମେ କାହିଁକି ନୃତ୍ୟ କର ?

ଜୟରାଜ : (ଥଟ୍ଟା କରି) ଓ, ମୁଁ ତ ଏବେ କରୁନି । ମୋ ନାଚ ତ ଭଲ ନ ଥିଲା । ଛିଣ୍ଡୁ ନ ଥିବା ଅଙ୍କଟା ଭଳିଆ- କିଏ ଆଗ ଆସିଲା: ଅଣ୍ଡା ନା କୁକୁଡ଼ା ?

ରତ୍ନା : ଯେତେସବୁ ଅଛିଣ୍ଡା ଅଙ୍କ କଷୁଥାଅ ବସି । ମୁଁ ଏବେ କ୍ଳାନ୍ତ ।

ଜୟରାଜ : ଟିକିଏ ରୁହ । ତମ ସହ କଥା ହବାର ଅଛି ।

ରତ୍ନା : କୋଉ ବିଷୟରେ ?

ଜୟରାଜ : ଯେ କୌଣସି ବିଷୟରେ । କାହାକୁ ଜଣେ ମୁଁ କଥା ହେବାକୁ ଚାହେଁ । ଏପରିକି ତମ ସହ ।

ରତ୍ନା : ମୁଁ ଏବେ କ୍ଲାନ୍ତ।

ଜୟରାଜ : ଏବେ ରୋଷେଇ ଘରେ ଚଟାଣରେ ଶୋଇଥିବା ଆୟା ଆଉ ତୁମେ ୟା' ଭିତରୁ ଜଣକୁ ବାଛିବାର ଅଛି। ମୁଁ ତୁମକୁ ହିଁ ଚାହେଁ।

ରତ୍ନା : ମୁଁ କିନ୍ତୁ ଶୋଇବାକୁ ଚାହୁଁଛି। (ଶୋଇବା ଘର ଆଡ଼କୁ ଅଗ୍ରସର ହୁଅନ୍ତି)

ଜୟରାଜ : ଚମତ୍କାର ଚିନ୍ତାଧାରା। (ଶୋଇବା ଘର ଆଡ଼କୁ ଅଗ୍ରସର ହୁଅନ୍ତି)

ରତ୍ନା : (ପଛକୁ ବୁଲି ପଡ଼ନ୍ତି) କ'ଣ ଚାହୁଁଛ ତୁମେ ମୋ ପାଖରୁ ?

ଜୟରାଜ : ଯେତେବେଳେ ମୁଁ ନିସଙ୍ଗ, ମୋ ସହ କଥା ହେବାଭଳି ଭଦ୍ରାମୀ।

ରତ୍ନା : କୋଉ ବିଷୟରେ କଥା ? ଅନ୍ୟଲୋକଙ୍କ ସାମ୍ନାରେ ତୁମେ କେମିତି ମୋତେ ଅପମାନିତ କର, ସେଇ କଥା ହେବାକୁ ? କେତେ.... କେତେ ବାଜେଲୋକ ତୁମେ ? ଓଃ, ଭଗବାନଙ୍କ ରାଣ, ଜୟରାଜ, ଡେରି ହବା ଆଗରୁ ଅନ୍ତତଃ କିଛି ଗୋଟେ ଭଲ କାମ କର।

ଜୟରାଜ : ତୁମେ ଏଇଆ କହିବାକୁ ଚାହଁ- ଏମିତିକା ଗୋଟେ ଭଲ କାମ କରିବାକୁ ଯାହା ତମ କାମରେ ଆସିବ ?

ରତ୍ନା : କିଛି ଗୋଟେ ଅନ୍ତତଃ କର। କିଛି ବି, ହେଲେ ଏ ପ୍ରହସନ ବଂଦ କର।

ଜୟରାଜ : ଗୋଟେ ନର୍ତ୍ତକ ହେବା କଥା ଛାଡ଼ି, କିଛି ବି ହୁଅ। ହେଇପାରେ ତୁମ ପାଇଁ ଭିନ୍ନ ଭିନ୍ନ ମୁଦ୍ରା ରଚନା କରିବା ଅଥବା ବଂଶୀ ବାଦନ କରିବା।

ରତ୍ନା : ସେ ସବୁ ବି ଆଜିକାଲି ଠିକ୍ ଭାବେ କରି ପାରୁନ ତୁମେ।

ଜୟରାଜ : କାହା ଦୋଷ ସେଇଟା ?

ରତ୍ନା : ଦେଶୀ ମଦରେ ସବୁବେଳେ ବୁଡ଼ି ରୁହ ଆଉ ମୋତେ ପଚାର ସେଇଟା କାହା ଦୋଷ ?

ଜୟରାଜ : ସେଇଟା କାହା ଦୋଷ ଯେ ନୃତ୍ୟ ପ୍ରଦର୍ଶନ ପାଇଁ କେବଳ ତୁମକୁ ହିଁ ଆମନ୍ତ୍ରଣ ମିଳୁଛି ?

ରତ୍ନା : ନିଶ୍ଚିତ ଭାବରେ ମୋ'ର ନୁହେଁ।

ଜୟରାଜ : ପୂରା ଗୋଟାଏ ବର୍ଷ। ପୁରା ଗୋଟାଏ ବର୍ଷ ହେଲା ମୁଁ ମନା କରୁଛି ନାଚ କରିବାକୁ। ସବୁ ଆମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରୁଛି କାରଣ ମୁଁ ଏକା ନୃତ୍ୟ କରିବାକୁ ଚାହେଁନା।

ରତ୍ନା : ଏମିତିକା ଗୋଟେ ତ୍ୟାଗ କରିବାକୁ ମୁଁ କେବେ ବି ଚାହିଁ ନ ଥିଲି। କୁହ ପ୍ରତିଦାନରେ ତୁମେ କ'ଣ ଚାହୁଁଛ। ମୁଁ ସବୁ କିଛି କରିବି ମାତ୍ର ପ୍ରତି ବଦଳରେ ମୋ ଜୀବନର ପୂରା ଗୋଟାଏ ବର୍ଷ ତ୍ୟାଗ କରି ପାରିବନି।

ଜୟରାଜ : ତୁମେ ମୋ ଆତ୍ମ ସମ୍ମାନ ଫେରାଇଦିଅ, ଏଇଆ ଚାହେଁ ମୁଁ!

ରତ୍ନା : କେବେ ସେଇଟାକୁ ତମଠୁଁ ନେଇଗଲି କି ମୁଁ?

ଜୟରାଜ : ତିଳ ତିଳ କରି। ଆମର ସବୁ ନୃତ୍ୟ କାର୍ଯ୍ୟକ୍ରମ ପାଇଁ ସର୍ବାଧିକ ଅର୍ଥ ଜବତ କରି ତୁମେ ସେଇଟାକୁ ନେଇଗଲ। ମୋର ସବୁଠୁ ଦୁର୍ବଳ ନୃତ୍ୟାଭିନୟକୁ ପ୍ରଦର୍ଶନ କରିବାକୁ ବାଧ କରି ତୁମେ ସେଇଟାକୁ ନେଇଗଲ। ନାଚିବା ସମୟରେ ତୁମେ ଆଲୋକ ବ୍ୟବସ୍ଥାକୁ ଏପରି କରିବାକୁ ଚାହିଁଲ ଯଦ୍ୱାରା ମୁଁ କେବଳ ତୁମ ଛାଇରେ ହିଁ ନାଚିଲି। ତୁମେ ମୋ ଆତ୍ମ ସମ୍ମାନକୁ ସେତିକି ବେଳେ ନେଇଗଲ ଯେତେବେଳେ ସବୁ ଲୋକଙ୍କ ସାମ୍ନାରେ ତୁମେ ମୋ ନାଆଁ ଧରି ଡାକିଲ। ଏକାନ୍ତରେ ବି ନାଆଁ ଧରି ଡାକିବାକୁ ମୋତେ ଲାଜ ଲାଗେ। ଆଉ ତୁମେ କହୁଚ ମୁଁ ବାଜେ ଲୋକ। ତୁମକୁ ଏଇଟା ସାମ୍ନା କରିବାକୁ ଭଲ ଲାଗୁନି। ସେମାନେ ସବୁବେଳେ ଚାହାନ୍ତି ମୁଁ ହିଁ ନାଚ କରେ।

ଜୟରାଜ : ଗୋଟେ ସୁନ୍ଦର ଯୁବତୀ, ନିଶ୍ଚୟ।

ରତ୍ନା : ଗୋଟେ ସୁନ୍ଦର ଯୁବତୀ! ଆଉ ତୁମେ ସେଇଥିପାଇଁ ମୋ ଉପରେ ଈର୍ଷାନ୍ୱିତ? କୋଉ ଭଳିଆ ପୁରୁଷ ତୁମେ?

ଜୟରାଜ : ଓଃ, କି ଚାଲାକ୍ ତୁମେ। ତାଙ୍କ ସହ ତୁମେ ମଧୁର ସଂପର୍କ ରଖି ପାରିଛ, କମ୍ ଆଶ୍ଚର୍ଯ୍ୟ କଥା ନୁହେଁ।

ରତ୍ନା : ମଧୁର ସଂପର୍କ, କାହା ସହିତ?

ଜୟରାଜ : ମୋ ବାପା । ସେଇ ଲୋକ ନୁହନ୍ତି ନା ନାହିଁ ?

ରତ୍ନା : ମୁଁ ଜାଣିପାରୁନି କ'ଣ ତୁମେ....

ଜୟରାଜ : ଛଳନା କରନି, ମୁଁ ଅନ୍ଧ ନୁହେଁ । ଆମକୁ ନାଚ କରିବା ଲାଗି କାହିଁକି ସେ ଅନୁମତି ଦେଲେ ? ଆମେ ଯେତେବେଳେ ଫେରି ଆସିଲେ, ସେ ଜାଣିଥିଲେ ଆମେ ତାଙ୍କ ହାତବାରିସୀ ହବୁ । ସେ ଯାହା ବି କହିବେ ଆମେ ଶୁଣିବୁ ।

ରତ୍ନା : ତୁମେ ଶୁଣିଥାନ୍ତ, ମୁଁ ନୁହେଁ । ହଁ, ସେ ଜାଣିଥିଲେ ସେ ମୋତେ ବାଂଧ୍ କରି ପାରିବେନି । କିନ୍ତୁ ମୋ ଜରିଆରେ ତୁମକୁ ହିଁ ବାଂଧ୍ କରିଦେଲେ ।

ଜୟରାଜ : ତୁମେ କହିବାକୁ ଚାହୁଁଛ, ସେ ମୋତେ ଜଣେ ନର୍ତ୍ତକ ଭାବେ ନୁହେଁ ବରଂ ଜଲ୍‌ଦି ଜଣେ ମଦ୍ୟପ ହେଇଯିବାଟା ଦେଖୁଥିଲେ ?

ରତ୍ନା : ସେଇଟା ତୁମ ନିଜ କର୍ମ । ସେ ଦୁଃଖ କରୁଥିଲେ ତୁମର ଏପରି ହେଇଯିବାରେ । ମୋ'ର ଦୁଃଖ ହେଇଥିଲା ।

ଜୟରାଜ : ସତରେ ଦୁଃଖୀ ଥିଲ ତୁମେ ? ମୁଁ ଭାବୁଛି ମୁଁ ଏମିତି ହେଇଯିବାଟା ତୁମେ ଚାହୁଁଥିଲ । ତୁମେ ଯାହା କରିବାକୁ ଚାହୁଁଥିଲ ସେ ତୁମକୁ ଅନୁମତି ଦେଲେ କରିବାକୁ, ହେଲେ ତୁମେ ମୋତେ ତୁମ ରାସ୍ତାରୁ ହିଁ ହଟେଇ ଦେଲ । ପ୍ରକାରାନ୍ତରେ ସେ ତୁମ ପ୍ରତି କୃତଜ୍ଞ । ବୟସ୍କ ହେବା ଲାଗି ବାପା ସବୁବେଳେ ମୋତେ କହୁଥିଲେ । ମାତ୍ର, ଜୋର ଜବରଦସ୍ତ ବୟସ୍କ କରାଇବା ଲାଗି ଏଇଟା ନିଶ୍ଚିତ ଭାବେ ବାଜେ ପ୍ରକୃତି ।

ରତ୍ନା : ଯାହାର ବାଜେ ପ୍ରକୃତି, ସେ ହିଁ ଜାଣେ ।

ଜୟପୁର : ଆଉ ତୁମର ?

ରତ୍ନା : ତୁମ ବାପାଙ୍କ ସହ ରାଜି ହେଇଯିବା ଓ ତୁମକୁ ମୋ ରାସ୍ତାରୁ ହଟାଇ ଦବା । ଯଦ୍ୱାରା ତୁମକୁ ମଣିଷ କରିବା ଲାଗି ସେ ଯାହା ଚାହୁଁଥିଲେ ତା' କରିବା ଲାଗି ବାଟ ତିଆରି କରିବା । ମାତ୍ର ଫଳାଫଳ ବିଷୟରେ ମୋର ଧାରଣା ଆଗରୁ କରିବା ଉଚିତ ଥିଲା । ଯେତେବେଳେ ମୁଁ ଅନୁତପ୍ତ ବୋଲି କହୁଛି, ଜୟ, ମୁଁ ଗଭୀର ଭାବେ ହିଁ ଅନୁତପ୍ତ ।

ଜୟରାଜ : ଓଃ, ଖୁବ୍ ବିଚକ୍ଷଣ ବୁଦ୍ଧି ତୁମର ! ସତରେ, ତୁମ ପ୍ରତି ମୋ'ର ଈର୍ଷା ଆସୁଛି। ତୁମର ଭରା ଯୌବନ ଅଛି, ତା' ସହ ନୃତ୍ୟାଙ୍ଗନା ଆଉ ପୂରାପୁରି ଅଭିନେତ୍ରୀ ବି। ତେଣୁ ଯେ କେହି ସେ ଦାୟିତ୍ୱ ତୁମକୁ ହିଁ ଦବ। ତୁମର ନିଜର ବି ଗୋଟେ ଶୈଳୀ ଅଛି। କେବଳ ବୁଦ୍ଧି କଥା କହିବିନି। ପ୍ରଥମେ ତୁମେ ମୋତେ ଧ୍ୱଂସ କରିଦେଲ, ତା'ପରେ ଗୋଟେ ଧାରଣା ଦେଲ ଯେ ଧ୍ୱଂସ କଲା ଭଳି ବହୁତ କିଛି ମୋ ପାଖରେ ଅନ୍ତତଃ ନାହିଁ। ତା'ପରେ ଚାହିଁଲ ତୁମ ନୃତ୍ୟ କାର୍ଯ୍ୟକ୍ରମ ପାଇଁ ମଞ୍ଚସଜ୍ଜା ଆଦି ତଦାରଖ କରେ, ତା'ପରେ ଏବେ ଗୋଟେ ଶବ୍ଦ ବାରମ୍ବାର କହୁଚ। ଦୁଃଖିତ' ଆଉ ଆଶା କରୁଛ ତୁମ କଥା ଶୁଣି ମୁଁ କାନ୍ଦି ଉଠେଇବି ପକେଇବି ଏବଂ ଏଇ ନିଷ୍କର୍ଷରେ ପହଂଚିବି ଯେ ତୁମର ସେବା କରିବା ହିଁ ମୋ ଜୀବନର ଚରମ ତଥା ପରମ କର୍ତ୍ତବ୍ୟ କଥା ହେଇଥିବାରୁ ଅନେକ ଅନେକ ଧନ୍ୟବାଦ। ଖୁବ୍ ଚମତ୍କାର ଥିଲା ଏ କଥା। ଶୁଭ ରାତ୍ରୀ। ଏବେ ତ ଛୁଆକୁ ଖୁଆଇବାର ସମୟ। (ସୋଫା ଉପରେ ଶୋଇ ପଡ଼ନ୍ତି ଏବଂ ଶାଲ୍ ଘୋଡ଼େଇ ହୁଅନ୍ତି)

ରତ୍ନା : ଓଃ, କେତେ ସହଜରେ ନିଜକୁ ତୁମେ ବୋକା ବନାଅ। ତୁମେ ଭାବୁଚ ତୁମେ ପୂରାପୁରି ଘୋଡ଼େଇ ହେଇ ଯାଇଛ ଏଇଆ ନା ? (ଜୟରାଜ ଉପରୁ ଶାଲ୍ କାଢ଼ି ପକାନ୍ତି) ତୁମକୁ ଏତେ ସହଜରେ ମୁଁ ଛାଡ଼ି ଦେବିନି। ତୁମର ଏ ପରିସ୍ଥିତି ପାଇଁ ଆମକୁ ଦାୟୀ କରି ତୁମେ ଖସି ଯାଇ ପାରିବନି। କ'ଣ ଚାହଁ ତୁମେ ? ନିଜକୁ ପଚାର। ସ୍ୱାଧୀନତା ଚାହଁ କି ? ସେଇଟା ତୁମର ଥିଲା ହେଲେ ତୁମେ ତୁମର ବନ୍ଦୀଶାଳାକୁ ଫେରି ଆସିଲ। (ସେ ପୁଣିଥରେ ଶାଲ୍ ଘୋଡ଼ାଇ ପକାନ୍ତି) ତୁମେ ନୃତ୍ୟ କରିବାକୁ ଚାହୁଁଚ କି ? (ରତ୍ନା ଶାଲ୍ କାଢ଼ି ଆଣନ୍ତି ତାଙ୍କ ଦେହରୁ। ମାତ୍ର ସେ ଆଖି ବଂଦ୍ କରି ଶୋଇବାର ଅଭିନୟ କରନନ୍ତି) ଯେତେବେଳେ ତୁମ ପାଖକୁ ଆମନ୍ତ୍ରଣ ସବୁ ଆସୁଥିଲା, ତୁମେ ଗ୍ରହଣ କଲନି କାହିଁକି ? ମୋ ଲାଗି ଗ୍ରହଣ କରୁ ନ ଥିଲା, ନା ତୁମର ଭୟ ଥିଲା, ଏକା ନାଚିଲେ ଯେତେ ସବୁ ଭୁଲ ଭଟକା ପଦାକୁ ଜଳ ଜଳ ହେଇ ବାହାରି ଆସିବ ? ହଁ, ତୁମେ ତୁମ ନିଜର ମୂଳ ନିଜକୁ ପଚାର, ତୁମେ ନିଜେ ହିଁ ତା'ର ଉତ୍ତର ପାଇଯିବ। ଠିକ୍ ଅଛି, ତୁମକୁ ଆଗକୁ ବଢ଼ିବାରେ ମୁଁ

ରୋକି ଦେଲି, ହେଲେ ତୁମେ ସେ ସବୁ ପାଇବାକୁ ଯୋଗ୍ୟ ଥିଲ ତ ! ତେଣୁ କେବେ ବି ମତେ ଆସି କହିବନି ମୁଁ ତୁମକୁ ନଷ୍ଟ କରି ଦେଲି। ମୋ'ର କରିବାର ଆବଶ୍ୟକତା ହିଁ ନାହିଁ। ତୁମେ ନିଜେ ହିଁ ତୁମକୁ ନଷ୍ଟ କରି ଦେଲ। ଆଉ ଆଶା କରନି, ତୁମ ପାଇଁ ମୁଁ ଦୁଃଖ ପ୍ରକାଶ କରିବି। ମୋତେ ତ ଶଙ୍କର କି ମୋ ନିଜ ପାଇଁ ଦୁଃଖ କରିବାକୁ ସମୟ ନାହିଁ। ଯେତେବେଳେ ସେ ଟିକିଏ ବଡ଼ ହେଇଯିବ, ତା'ର ବାପଟେ ଦରକାର ବୋଲି ଚାହିଁକି। ଓଃ, ତୁମେ ତ ତା' ପାଖାପାଖି ଥିବ। କୁଆଡ଼େ ଯିବ ତୁମେ ? ହେଲେ ସେ କେବଳ ତୁମ ବାହାରଟା ହିଁ ଦେଖିବ। ଘରେ କେହି ନାହାନ୍ତି ବୋଲି ଜାଣିବାକୁ ତାକୁ ବେଶି ସମୟ ଲାଗିବନି (ଜୟରାଜଙ୍କ ମୁଣ୍ଡକୁ ଲକ୍ଷ୍ୟ କରନ୍ତି ଏବଂ ଶୋଇବା ଘର ଆଡ଼କୁ ଅଗ୍ରସର ହୁଅନ୍ତି।)

ଜୟରାଜ : (ଟିକିଏ ଅଟକିଯା'ନ୍ତି, ପରେ ହଠାତ୍) ତୁମେ ଯଦି ଟିକିଏ କରାଘାତ କରିବାକୁ କଷ୍ଟ କର, ତେବେ କାହାକୁ ଜଣେ ଘରେ ପାଇଯିବ। (ଉଠି ପଡ଼ନ୍ତି) ଶଙ୍କର ପାଇଁ ତୁମେ କ'ଣ ସବୁ କିଛି ? ସେ ତ ଏବେ ତୁମକୁ ଚାହୁଁଛି। ହେଲେ ତୁମେ ଏବେ କୋଉଠି ?

ରତ୍ନା : ମୋର କର୍ତ୍ତବ୍ୟ ଆଉ ମୋ କ୍ଷମତା ବିଷୟରେ ମୁଁ ଜାଣେ, ମୁଁ କୋଉଠି ଠିଆ ହେଇଛି, ସେ କଥା ମୁଁ ଜାଣିଥିବାରୁ ନିଜକୁ ଗର୍ବ ଅନୁଭବ କରେ।

ଜୟରାଜ : ସେଇଠିକୁ ଯିବା ? ସେଇ ଅପରୂପ ବେଶଭୂଷାରେ ? ଯେଉଁଠି ଚିତ୍କାର କରୁଥିବ ସମସ୍ତଙ୍କୁ 'ଏଇଠି ଏବେ ମୁଁ' ? ସେଇ ଜାଗା କଥା କହୁଚ ?

ରତ୍ନା : ଖୁବ୍ ମଜା ଲାଗୁଛି ଶୁଣିବାକୁ। ଅନ୍ତତଃ ତୁମ ଭଳି ଜଣେ ମଦ୍ୟପର ମୁହଁରୁ।

ଜୟରାଜ : ଯେତେ ଚାଲାକ୍ ନୃତ୍ୟାଙ୍ଗନା ତୁମେ ହେଇ ଥାଅନା କାହିଁକି, ଗୋଟେ ଭଲ ମାଆର ଭୂମିକା ତୁମେ ନିଭାଇ ପାରୁଛ ବୋଲି ତୁମେ ମୋତେ ଆଦୌ ବୁଝେଇ ପାରିବନି। ଏତିକି ବି ତୁମକୁ ଜଣା ନାହିଁ, କେଉଁଠୁ ଆରମ୍ଭ କରିବ।

ରତ୍ନା : ତୁମ ସହ ଏଇ ବାଜେ କଥା ସବୁ ଏଇନେ ବଂଦ୍ କରି ମୁଁ ସେ ଭୂମିକା ଆରମ୍ଭ କରିବାକୁ ଯାଉଛି, ଏବେ ଛୁଆକୁ ଖାଇବାକୁ ଦେବି ଯଦି ତୁମର ଆଉ କିଛି କହିବାର ନ ଥାଏ, ତେବେ ଶୁଭରାତ୍ରୀ।

ଜୟରାଜ : (ଘୃଣାରେ) ଛୁଆକୁ ଖାଇବାକୁ ଦେବ, ଦରକାର ପଡ଼ିବନି ସେଇଟା। ସେ ଏବେ ଗଭୀର ନିଦ୍ରାରେ। ସେ ତା' ଖାଇବା ଭୁଲିବନି।

ରତ୍ନା : ତୁମେ କିମିତି ଜାଣିଲ ? ସାଧାରଣତଃ ସବୁ ରାତିରେ ଏତିକି ବେଳେ ସେ ଉଠେ।

ଜୟରାଜ : ମାତ୍ର ସେଇ ରାତ୍ରୀମାନଙ୍କରେ ନୁହଁ, ଯେଉଁ ରାତ୍ରୀରେ ତୁମର ନୃତ୍ୟାଭିନୟ ଥାଏ।

ରତ୍ନା : କ'ଣ କହିବାକୁ ଚାହଁ ତୁମେ ?

ଜୟରାଜ : ସେଇ ଆୟା।

ରତ୍ନା : (ମନଯୋଗ ସହ ଶୁଣିବା ଭଳି)। କୁହ, କହି ଚାଲ।

ଜୟରାଜ : ତୁମେ ଜାଣିପାରିବନି। ଗୋଟେ ପୁରୁଣା କୌଶଳ ଗୋଟିଏ ଯୁଗର ଆୟାମାନଙ୍କ ପାଖରୁ ପରବର୍ତ୍ତୀ ଯୁଗର ଆୟାମାନଙ୍କ ପାଖକୁ ଆପେ ଆପେ ଚାଲି ଆସିଛି। ମୁଁ ଜାଣେ। କାରଣ ମୁଁ ବି ଗୋଟେ ଆୟା ଦ୍ୱାରା ବଡ଼ ହେଇଛି।

ରତ୍ନା : (ମୁହଁ କଠୋର କରି) ଅଫିମ।

ଜୟରାଜ : ବହୁତ ଭଲ କାମ କରେ। ନା କ'ଣ କହୁଛ ? ସେ ଆଦୌ କାନ୍ଦିନି। ବ୍ୟସ୍ତ ହୁଅନା, ସେମାନେ ସବୁବେଳେ ଠିକ୍ ଭାଗମାପ କରି ଦେଇଥା'ନ୍ତି।

ରତ୍ନା : (ଆତଙ୍କିତ ହେଇ)। ଇଏ ବି ତା'ହେଲେ ?

ଜୟରାଜ : ହଁ। ସିଏ ବି। ସିଏ ବି ରୋଷେଇଶାଳରେ ଶାନ୍ତି ନିଦ୍ରା ଚାହେଁ ଠିକ୍ ତା' ମାଆ ପରି। ମାଆଙ୍କ ମାଆ ପରି।

ରତ୍ନା : ସେ ବି ତାହେଲେ ଶଙ୍କରକୁ ଦେଇଛି ?

ଜୟରାଜ : (ଉଠି ଠିଆ ହୁଅନ୍ତି) କ'ଣ କହିବାକୁ ଚାହଁ ତୁମେ? (ମୃଦଙ୍ଗମ୍‌ରେ ମୃଦୁ ଆଘାତ ଶୁଣାଯାଏ। ରତ୍ନା ଆତଙ୍କିତ ହେଇ ଚାହିଁ ଥା'ନ୍ତି ତାଙ୍କୁ। ଜୟରାଜ ରତ୍ନାଙ୍କ ଆଡ଼କୁ ଆଗେଇ ଆସନ୍ତି) କ'ଣ କହିଲ ତୁମେ? ସେ ବି ଶଙ୍କରକୁ ଦେଇଛି? (ରତ୍ନାକୁ ଧରି ପକେଇ) କ'ଣ କହିଲ ତୁମେ? ସେ ବି ଶଙ୍କରକୁ ଦେଇଛି? (ତାଙ୍କୁ ମୁକ୍ତ କରି ଦିଅନ୍ତି) ତୁମେ?

ରତ୍ନା : (ଚିତ୍କାର କରି) ନା! (ଜୟରାଜ ପାହାଚ ଆଡ଼କୁ ଦୌଡ଼ିଯା'ନ୍ତି। ରତ୍ନା ଉପରକୁ ଚାହାନ୍ତି ଏବଂ ଧୀରେ ଧୀରେ ପାହାଚ ଚଢ଼ନ୍ତି। ସଂଗୀତ ଶୁଣା ଯାଉଥାଏ। ଆଲୋକ ଧୀରେ ଧୀରେ ନିଷ୍ପ୍ରଭ ହେଉଥାଏ। ରତ୍ନା ତରତର ହେଇ ପ୍ରସ୍ଥାନ କରନ୍ତି। (ବୟସ୍କା ରତ୍ନାଙ୍କ ଚିତ୍କାର ସହ ସଂଗୀତର ମୂର୍ଚ୍ଛନା ଶୁଣାଯାଏ। ବଗିଚାବି ରୂପାନ୍ତରିତ ହୁଏ ଡ୍ରଇଂରୁମ୍‌ରେ। ସଂଗୀତ ଚାଲିଥାଏ, ବୋଧହୁଏ ନିଶବ୍ଦରେ। ଆଲୋକ ଥାଏ ସେଇପରି ନିଷ୍ପ୍ରଭ। ବୟସ୍କା ରତ୍ନା ପାହାଚ ତଳକୁ ଆସନ୍ତି ଏକ ପ୍ରକାର ଅଚେତନ ଅବସ୍ଥାରେ। ବୟସ୍କ ଜୟରାଜ ପ୍ରବେଶ କରନ୍ତି ଏବଂ ଛାଇରେ ଠିଆ ହୁଅନ୍ତି ଏବଂ ରତ୍ନାଙ୍କୁ ଲକ୍ଷ୍ୟ କରୁଥା'ନ୍ତି, ଯେତେବେଳେ ରତ୍ନା ବସୁଥାନ୍ତି। ଜୟରାଜ ଧୀରେ ଧୀରେ ଯାଇ ତାଙ୍କ ପାଖରେ ଠିଆ ହୁଅନ୍ତି। ଦୁହିଁଙ୍କ ଉପରେ ଆଲୋକ କେନ୍ଦ୍ରୀଭୂତ ହୁଏ। ସମୟବୋଧ ପରିତ୍ୟକ୍ତ ହେବା ପରି ଲାଗୁଥାଏ।)

ଜୟରାଜ : ସବୁ କଥାବାର୍ତ୍ତା ହେଇଗଲା। ଆମେ ଆର ମାସ ପଳେଇବା। ଘର ଭାଂଗିବା ଲାଗି ଲୋକେ ପହଂଚି ସାରିଥିବେ ସେତେବେଳକୁ। ପ୍ରଥମେ ସାମ୍ନାଟାକୁ ଭାଂଗିବେ। ନୂଆ ଅଂଶକୁ ତଳକୁ ପକାଇବା ଲାଗି ସୁବିଧା ହବ। ଏଇଟା ଟିକେ କଷ୍ଟକର ହେଇପାରେ। ପୁରୁଣା ଦିନମାନଙ୍କରେ ସେମାନେ ଖୁବ୍ ନିଦା ଘର ତିଆରି କରୁଥିଲେ। ବଡ଼ ନିଦା ଲୋକ ଗୁଡ଼ାକ ବି, ହେଲେ ମୋ ବାପାଙ୍କ ଭଳି ନିଦା ଲୋକ ବି ଟଳି ପଡ଼ିଲେ। (ସ୍ପଷ୍ଟ ଲାଇଟ୍ ହଠାତ୍ ପଡ଼େ ଯୁବକ ଜୟରାଜ ଓ ଯୁବତୀ ରତ୍ନାଙ୍କ ଉପରେ ନାଚ ହଲ୍‌ରେ। ଦୁହେଁ ନୃତ୍ୟ କରିବା ସମୟର ବେଶ ଭୂଷାରେ ଥା'ନ୍ତି। ରତ୍ନା ଜୟରାଜଙ୍କ କୁଞ୍ଚ କରି ଫେର ବାନ୍ଧୁଥା'ନ୍ତି ଓ ଯେତେବେଳେ ବୟସ୍କ ଜୟରାଜଙ୍କ ଭାଷଣ ଚାଲିଥାଏ, ସେ ଦୁହେଁ

ନିଜ ନିଜର ଘୁଙ୍ଗୁର ପିନ୍ଧିବାରେ ବ୍ୟସ୍ତ। ଦୁହେଁ ବହୁବାର ସ୍ମିତ ହସ ହସୁଥାନ୍ତି ଏବଂ ଉଚ୍ଚସ୍ୱରରେ ବି ହସୁଥା'ନ୍ତି।)

ଆମେ ଆମ ଫ୍ଲାଟକୁ ଚାଲି ଆସିଛୁ। ବହୁତ ସୁନ୍ଦର ହେଇଛି ଏ ଫ୍ଲାଟ। ଆମ ବାଲକୋନିରୁ କୃଷ୍ଣଚୂଡ଼ା ଗଛର ମଥାନ ବି ନଜରକୁ ଆସେନା। ମୋତେ କୁହାଗଲା ଯେ ସେମାନେ ଏଇଟାକୁ କାଟିବାକୁ ଯୋଜନା କରୁଥିଲେ। ସେଇଟା କୁଆଡ଼େ ରାସ୍ତାରେ ଯିବା ଆସିବାବେଳେ ଖୁବ୍ ଅସୁବିଧା କରୁଛି। ମାତ୍ର ଏଇ କୋଠାର ଦଳେ ଅବସରପ୍ରାପ୍ତ ବୁଢ଼ା ଲୋକେ ହିଁ ତାକୁ ବଂଚେଇ ଦେଲେ। ମୁଁ ଭାବୁଚି ମୁଁ ବି ତାଙ୍କ ଭିତରୁ ଜଣେ। ମୁଁ ତୁମକୁ କହିଥିଲି କି ଯେତେବେଳେ ତୁମେ ଚନ୍ଦ୍ରକଳା ପାଖକୁ ବୁଲି ଯାଇଥିଲ, ଲତା ମୋ ସହ କଥା ହେଇଥିଲା ବୋଲି ? ତୁମେ ଦୁହେଁ ବହୁତ ଘନିଷ୍ଠ ବଂଧୁ ବୋଲି ଜାଣି ସେ ବହୁ ଖୁସି ହେଇଥିଲା। ତୁମ ଦୁହିଁଙ୍କ ଭିତରେ କେତେ ସାମଞ୍ଜସ୍ୟ ରହିଚି ଏ କଥା ମୁଁ ଲତାକୁ କହୁଥିଲି। ଏପରିକି ଦୁହିଁଙ୍କର ଅଛି ଗଣ୍ଠିବାତ। ଲତା କହିଥିଲା ଯେ ଆଜି ତା' ପୁଅ ପ୍ରଥମ ଶବ୍ଦ କହିଲା। ସେ ଶବ୍ଦଟା 'ଜିଲାପି' ଭଳି ଶୁଣା ଯାଉଥିଲା। (ଯୁବକ ଜୟରାଜ ଏକ ପ୍ରକାର ମୁଦ୍ରା କରନ୍ତି। ତରୁଣୀ ରତ୍ନା ହସନ୍ତି ଏବଂ ମଜା କରି ତାଙ୍କୁ ମୃଦୁ ଧକ୍କା ବି ଦିଅନ୍ତି)

ଆଜି ମୋ ଯକୃତଟା କାମ କରିବା ବଂଦ୍ କରି ଦେଇଛି। ଏବଂ ମୁଁ ତା'ର ଅନୁଧାବନ ହିଁ କରିଛି। ତୁମେ ବ ମରି ଯାଇଛ। ହତାଶାରୁ ବୋଲି, ମୋ ସନ୍ଦେହ। ଆମ ଫ୍ଲାଟ୍ ଏବେ ଖାଁ ଖାଁ। ଏବେ ସେଇଟା ବିଶ୍ୱାସ ଆଉ ଲତାର ସଂପତ୍ତି। ଗୋଟେ ମଇଁଷି ଉପରେ ମୃତ୍ୟୁ ସହିତ ଚଢ଼ି ତୁମେ ଯେଉଁ ଆଡ଼କୁ ଆସୁଛ ସେଇଟା ମୋତେ ସ୍ୱର୍ଗ ଭଳି ଲାଗୁଛି। ତୁମେ ଓହ୍ଲେଇ ପଡୁଛ ତା' ଉପରୁ ଏବଂ ମୁଁ ତୁମକୁ ସ୍ୱାଗତ କରୁଛି। ମଇଁଷିଟି ଅଦୃଶ୍ୟ ହେଇ ଯାଉଛି। (ବଂଶୀ ବାଦନ) ଆଉ ଆମେ ପରସ୍ପରକୁ ଆଲିଙ୍ଗନ କରୁଛେ। ଆମେ ହସୁଛେ, ନାଚୁଛେ।

(ତରୁଣ ଜୟରାଜ ଓ ତରୁଣୀ ରତ୍ନା ହସନ୍ତି ଓ ପରସ୍ପରକୁ ଆଲିଙ୍ଗନ କରନ୍ତି)

ଆମେ ଏକଦମ୍ ନିଖୁଣ ଭାବେ ନାଚ କରୁ। ସାଂଗ ହେଇ। ଗୋଟେ ତାଳ କିମ୍ବା ପଦପାତ ଆମେ ଭୁଲୁ ନାହିଁ। ଆମର ପୂର୍ବର ନାଚ ମାନଙ୍କରେ ଥିବା ତ୍ରୁଟିକୁ ଆମେ ମନେ ପକାଉ ଆଉ ହସୁ।

(ତରୁଣୀ ରତ୍ନା ଏକ ପ୍ରକାର ଅଙ୍ଗଭଙ୍ଗୀ କରନ୍ତି, ଯାହାକୁ ତରୁଣ ଜୟରାଜ ସହମତି ହୁଅନ୍ତି ନାହିଁ।)

ଆମେ କେବଳ ମଣିଷ ଥିଲୁ। ଆମର ମାଧୁର୍ଯ୍ୟର ଅଭାବ ଥିଲା ଆମର ବିଚକ୍ଷଣତାର ଅଭାବ ଥିଲା। ଈଶ୍ୱରଙ୍କ ପରି ନାଚିବା ଭଳି କୁହୁକତା ବି ଆମର ଅଭାବ ଥିଲା।

(ତରୁଣ ଦମ୍ପତି ବର୍ତ୍ତମାନ ନୃତ୍ୟାଭିନୟ କରିବାକୁ ପ୍ରସ୍ତୁତ ହେଇ ସାରିଥିଲେ। ସେମାନେ ଦର୍ଶକମାନଙ୍କୁ ନମସ୍କାର କରୁଥିଲେ ଯେତେବେଳେ ସଂଗୀତର ମୂର୍ଚ୍ଛନା ନିକଟରୁ ନିକଟତର ହେଉଥିଲ ଏବଂ ସ୍ପଟଲାଇଟ୍ ଧୀରେ ଧୀରେ ନିଷ୍ପ୍ରଭ ହେବାରେ ଲାଗିଥିଲା।)

ବିଷୁବ ସଂକ୍ରାନ୍ତି, ୨୦୧୩

୬.୫୦.ମି. ସକାଳ



ମନୁ ଦାଶ ଜଣେ ପ୍ରେମିକ - ସାହିତ୍ୟର ପ୍ରେମିକ । ଯଶ ପାଇଁ ନୁହେଁ, ଜୀବନ ପାଇଁ ସାହିତ୍ୟ - ଏଥିରେ ବିଶ୍ୱାସ କରୁଥିବା ମନୁ ଦାଶଙ୍କ ସାହିତ୍ୟ - ଜୀବନ ବ୍ୟାପ୍ତ ଓ ବିସ୍ତୃତ । ୧୯୭୪ରୁ ଚର୍ଚ୍ଚିତ 'ଅନାମ' କାବ୍ୟ ଆନ୍ଦୋଳନ ସହ ସଂପୃକ୍ତ ଏହି ଲେଖକ କବି, ଗାଳ୍ପିକ, ସ୍ତମ୍ଭକାର, ସଂପାଦକ ଓ ଅନୁବାଦକ ଭାବେ ବେଶ୍ ପ୍ରସିଦ୍ଧି ଲାଭ କରିଛନ୍ତି । 'ଆଞ୍ଜୁଳେ ସମୁଦ୍ରର ଢେଉ' ଓ 'କଳା ହରିଣ' କବିତା ସଂକଳନର ସ୍ରଷ୍ଟା ମନୁ ଦାଶଙ୍କ 'କଣ୍ଢେଇ ନାଚ' ଗଳ୍ପ ସଂକଳନ ସମେତ 'ଗୁଡ୍‌ଲିର ଜେଜେବାପା', 'ପ୍ରିୟ ଗଣକ', 'ଭୀରୁ ଭାରତ' ଓ 'ବଞ୍ଚିବାର ବାଟ' ଭଳି ପ୍ରବନ୍ଧ ସଂକଳନ ପ୍ରକାଶ ପାଇଛି । ଉଦୟନ ବାଜପେୟୀ, କେଦାରନାଥ ସିଂହ, ଉଦୟ ପ୍ରକାଶଙ୍କ 'ମୋହନ ଦାସ', ଗୁଲ୍‌ଜାର ଓ ନମିତା ଗୋଖ୍‌ଲେଙ୍କ ପରି ଚର୍ଚ୍ଚିତ ଓ ପ୍ରସିଦ୍ଧ ଲେଖକଙ୍କୁ ସେ ଅନୁବାଦ କରିଛନ୍ତି । ମିନିଗଳ୍ପ ସଂକଳନ 'ଜଣେ ଆତଙ୍କବାଦୀ ସହ ଗୋଟିଏ ସଂଧ୍ୟା'ର ସର୍ଜନାକାର ମନୁ ଦାଶ ମଧ୍ୟ 'ନାଇଣ୍ଟି ନାଇନ୍ ୱାର୍ଡସ' ଓ 'ଧଉଳି ରିଭ୍ୟୁ'ର ସଂପାଦକ ।

ମହେଶ ଦତ୍ତାନିଙ୍କ ବହୁ ଚର୍ଚ୍ଚିତ ନାଟକ 'ମଣିଷ ପରି ନାଚ' ଶ୍ରୀ ଦାଶଙ୍କ ଲେଖନୀର ଆଉ ଏକ ସଫଳ ପରିପ୍ରକାଶ ।

